ପ୍ରଭତ ପ୍ରକାଶନୀ—ପଞ୍ଚଦଶ ଅବଦାନ

# ନାଦଶ୍ରୀ

ଶ୍ରୀ ଜଗନ୍ନାଥ ଦେବ ବର୍ମା

ପ୍ରକାଶ କରିଚନ୍ତି—

ଶ୍ରୀ ଜଗନ୍ନାଥ ଦେବ ବର୍ମା,
ଟିକଲ ।

ପ୍ରଥମ ପ୍ରକାଶ—
ଏକ ହଜାର

ପଚ୍ଛଦପଟ ଆଙ୍କିଛନ୍ତି—
ଶ୍ରୀ ଗୋପାଳ କାନୁନ୍‌ଗୋ,
ପୁରୀ ।

ମୂଲ୍ୟ—
ଏକ ଟଙ୍କା

ମୁଦ୍ରଣ କରିଚନ୍ତି—

କମଳ କୁମାରୀ ପ୍ରେସ୍‌,
ଟିକଲ ।

# ଉପାୟନ

ଉତ୍କଳର ବରପୁତ୍ର , ଭାରତ-ସେବକ
ପଦ୍ମଶ୍ରୀ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଏମ୍. ଏ.
ମହୋଦୟ ଙ୍କର କମଳେଷୁ:-

ତବ ବାହୁ ବନ୍ଧନେ ହସେ
ଶତ କଂକାଳ
ଭୁଲି ଅତୀତର ଶତକାହାଣୀ

ତେଣୁ ଆଜ ତବ କର
ସ୍ୱର୍ଣ୍ଣ କୁଶେଶୟେ
ଅରପେ ମୁଁ ଜୀବନର ରଙ୍ଗିଣୀ ।

ଆପଣଙ୍କର
ଗୁଣମୁଗ୍ଧ
ଜଗନ୍ନାଥ ଦେବ ବର୍ମା

## ବୋଧନ

ଦୁଇଟି ଚକ୍ଷୁ ଓ ଗୋଟିଏ ହୃଦୟ-ଏ ତିନୋଟିର ପରସ୍ପର ମିଳନରେ କବିତା-କୁସୁମ ଫାଟିଉଠେ—। କଳ୍ପନାର ସ୍ନେହାବେଶ ମଧ୍ୟରେ ଯେଉଁ କେତୋଟି କବିତା ରୂପାୟିତ ହୋଇଛି ତାହା ଏକତ୍ର ସମାବେଶ ହୋଇ 'ନାଦଶ୍ରୀ' ପ୍ରକାଶ ପାଇଲା। ତାହା କେତେଦୂର ଧ୍ୱନିଯୁକ୍ତ ହୋଇ ପାରିଛି ସେ କଥା ମୋର ପ୍ରିୟ ପାଠକ ପାଠିକା ବିଚାର କରିବେ।

ଏଥିର କେତୋଟି କବିତା 'ସହକାର', 'ନନ୍ଦନ' ପ୍ରଭୃତି ମାସିକ ପତ୍ରିକାରେ ଏଥିପୂର୍ବେ ପ୍ରକାଶ ପାଇ ସାରିଛି। ଅତଏବ ଉକ୍ତ ପତ୍ରିକାର ସମ୍ପାଦକ ମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରି 'ନାଦଶ୍ରୀ' ପ୍ରକାଶରେ ଅଗ୍ରସର ହେଲି।

ପରିଶେଷରେ ଉତ୍କଳର ଲବ୍ଧପ୍ରତିଷ୍ଠ କଳାକାର ତଥା କବି ଶ୍ରୀ ଗୋପାଳଚରଣ କାନୁନ୍‌ଗୋ, ବି. ଏ. ମହୋଦୟ ଏଥିର ପ୍ରଚ୍ଛଦପଟ ଆଙ୍କି 'ନାଦଶ୍ରୀ' କୁ ରୂପାୟନ କରିଥିବା ଯୋଗୁଁ ତାଙ୍କର ନିକଟରେ ମୋର ସୌହାର୍ଦ୍ଦ୍ୟ ଆନ୍ତରିକତା ଜ୍ଞାପନ କରୁଛି।

ଇତି
ଅମରେଙ୍କର
ଜଗନ୍ନାଥ ଦେବ ବର୍ମା

# —ସୂଚୀ—

ସୂତ୍ର —ଓ— ପୃଷ୍ଠା


| | | |
|---|---|---|
| ୧ | କାବ୍ୟସ୍ରଣୀ | ୧ |
| ୨ | ବେଦନା | ୬ |
| ୩ | ବର୍ଷାଗୀତ | ୮ |
| ୪ | ଅମୃତ ଅନୁଭବ | ୧୩ |
| ୫ | ହେ ପାନ୍ଥ ମନ୍ଥର ଗୀତ | ୧୪ |
| ୬ | ମନେନାହିଁ | ୧୯ |
| ୭ | ପର୍ତ୍ତୁଗୀଜ ! ଛାଡ ଆଜ ଗୋଆ | ୨୧ |
| ୮ | ସ୍ୱପ୍ନ | ୨୬ |
| ୯ | ଜୟଦେବ | ୨୮ |
| ୧୦ | ମାଗେ ତବ ଶେଷ ଦାନ | ୩୧ |
| ୧୧ | ତୁମେ ଓ ମୁଁ | ୩୪ |
| ୧୨ | ଏଅ ମୋତେ ଭଣ୍ଡ ଦୁବା | ୩୬ |
| ୧୩ | ସେଇ ମୋର ଆଚ୍ଚ ପରିତୃପ୍ତି | ୪୦ |
| ୧୪ | ପଥ ପ୍ରାର୍ଥନା | ୪୨ |
| ୧୫ | ଛାୟା | ୪୫ |
| ୧୬ | ଜୀବନର ଜୟଗାନ | ୪୬ |
| ୧୭ | ନୈଶ ସ୍ୱପ୍ନରେ | ୪୯ |
| ୧୮ | ବିଦାୟ ମିଳନ | ୫୩ |
| ୧୯ | ସ୍ମୃତିଧ୍ୱନି | ୫୮ |
| ୨୦ | ଚପାଚ | ୬୧ |

| | | |
|---|---|---|
| ୨୧ | ଅନୁନୟ | ୬୭ |
| ୨୨ | ଅଗସ୍ତ୍ୟ ଅର୍ଘ୍ୟ | ୬୯ |
| ୨୩ | ଗଂଗାଧର | ୭୪ |
| ୨୪ | ସ୍ମୃତି ତର୍ପଣ | ୭୯ |
| ୨୫ | ଦଣ୍ଡ ଆଜ ଭୂମି ଅଧିକାର | ୮୧ |
| ୨୬ | ଜୀବନ | ୮୬ |
| ୨୭ | ତରୁଣ କବର ଖେଦ | ୯୧ |



# କାବ୍ୟରାଣୀ

ଓଗୋ କାବ୍ୟରାଣୀ !
ଜୀବନର ନିତ୍ୟ ଅନ୍ଧକାର କୁଞ୍ଜେ
ମୌନ ଭୃମ ଅପାଙ୍ଗ—ସ୍ୱଢ଼ାଁଣୀ
ରଚେ ଶତରୂପ, ଅହେ ମୂକଲ୍ୟାଣୀ !
ନବ ଉନ୍ମେଷିତ ବସନ୍ତର ମଧୁ ହାସେ
ଝଙ୍କୃତ ସୁରମ୍ୟ ଆକାଶେ—
ଶିରତଃ ଉଗ୍ର ସଜୀବିତ
ଲତା ଗୁଳ୍ମ ଶୋଭୀ କଳକ୍ରୀଡ଼ା କୁଞ୍ଜେ
ଦେଖିବ ମୁଁ ତତେ
ଅନିମେଷ ନେତ୍ରେ
ଶିଳ୍ପୀ ଯଥା ଆଲେଖ୍ୟ ଦର୍ଶନେ ନିଜକୁ ନିଜେ ନ ପାଏ ପରତେ ।

ଶୁଣିଛି ମୁଁ
ବସନ୍ତ—ବନ୍ଧୁ—ଅଗ୍ରଦୂତ ପିକ କଣ୍ଠେ
ସ୍ନିଗ୍ଧ ମଧୁର ସରସ କଥନ—
"ଆସିବ, ମୁଁ ବସନ୍ତ ଆସିଲଣି—ଏଇ ଆସିଗଲା——"
ମଞ୍ଜରିକାର ଶ୍ୟାମଳ ଯୌବନେ
ବନ ପଥେ ନବ ଦୂର୍ବାଦଳେ
ପୁଣି ଅନିଳ ଲସିତ ସ୍ୱର୍ଣ୍ଣଶସ୍ୟଶୀର୍ଷରେ
ମଥାକୁ ମଥା ସେନେହେ ଲଗାଇ
ଉପିମାଡ଼ ପ୍ରାନ୍ତରେ ପ୍ରାନ୍ତରେ ମନ୍ଦ ସମୀରେ
କେଉଁ ଦୂର ବନ୍ଧୁମଣି ଖେଳେ
ନଭ ପହିଁ ବରଷନ୍ତି ଚନ୍ଦ୍ରବାଳ
ପୁଣି ଆସୁ ଗୁଳ ଛନ୍ଦମୟୀ
ଦେଖେ ମୁଁ ତନ୍ଦ୍ରିତ ମୋର ଅପଲକ ଦୃଷ୍ଟି ପାତେ
ଅବର୍ଣ୍ଣନ ସୁଗଭୀର ଅନୁରାଗେ ।
ପ୍ରାତ ଛଳ ଛଳ ଶତଦଳେ ଭୋର ଶିଶୁନୀଡ଼ା
ଆଦ୍ୟ ମଳୟେ ଦେଶ ଚନ୍ଦ୍ରଚୂଡ଼—
ନିଶି ଶେଷର ଅମ୍ବର ଚୁମ୍ବିତ
ପ୍ରଥମ ବନ୍ଦନା ଡାକେ ଭୋର କୁମାରୀ କୁହୁକ
ଶରତର ଦିଗନ୍ତ ଜ୍ୟୋତ୍ସ୍ନାଲୋକେ
ପିନ୍ଧି ମାଳ ନକ୍ଷତ୍ର
ଅନାଉ ତୁ ମତେ—

ସୌନ୍ଦର୍ଯ୍ୟ ଦର୍ଶନେ କଣନାହିଁ ତୁ ଅନ୍ତର
ଥକାଇଲୁ କେବେ ମୋ କଳ୍ପନା ପ୍ରଖର ।
ସନ୍ଧକାର ଅଙ୍ଗେ ଛନ୍ଦା ମାଧବଙ୍କର ମଧୁ ଚରଣପୁ
ଦେଖାଇଚୁ ମତେ ଯେତେହେ ବାସର ନାୟିକା –
ବରଷାର ଉଚ୍ଛୁଳ ନଦୀ ସ୍ରୋତେ ଭସାଇ ଦେଇଚୁ
ଆହା ମୋର ଜୀବନ ନଉକା –
ଗୃଳିଶ ମୁଁ ଅମରଣ ଦାନୀ
ଆରେ! ଶ୍ୟାମ ସ୍ନିଗ୍ଧ ଗାଢୀ ।
ଅୟି ଦୁଷ୍ଟା, ଗନ ଶିରୋମଣି,
ନତ ନତ ଏକ ତୋର ଶିଶୁ ଢଙ୍ଗ ପୁଣି –
ଚଦେନି କଥାରେ ତୋର ଦେଖଇ ମୁଁ
କଟଣାଖି ଭୁଲଭ ତୋର ଗୁମାନ-ଗାରିମା
ଧୂର ମାଳ ପର୍ବତ ଚୂଳେ ଅଚଳକ ଗୃହାଣୀ
କେତେ କରୁଣ କମନୀୟ ଭାବ
ପ୍ରେମର ସଫିଳ ଝରଣା
ଉଠେ ତହୁଁ ଉକାଣି ଉକାଣି
ଉଦାସ ନୟନେ
ଚଳନ୍ତ ମୋର ପଦଡନାହିଁ ।
ନଦର ଅମ୍ବର ତଳେ ଖେଳ ଉଠେ
ଶିହରଣ, ଅପୂର୍ବ କଂପନ
ସତେ ଅବା ସନ୍ତ୍ରରର ପଥକ ବିନ୍ୟାସ –

## ନାଦଶ୍ରୀ

ମଧୁର ଉଲ୍ଲାସେ
ଆଗାମୀର ସ୍ୱପ୍ନ ସିଦ୍ଧି ମାଇଁ ବଢ଼ାଉଛ ଅମୃତ ମୋ ପୁରେ?
ପୁରାତନ ବଲ୍ଲକୀର ତାରେ
ଦେଉ ସଖୀ ନୂତନର ନିଶା—
ଝଙ୍କାରର ଉଚ୍ଛ୍ୱସିତ ନିଶ୍ୱାସେ
ବୋଧକରେ ତୋର ସ୍ନେହ-ତୃଷା ।
ମନେ ମୋର ବାଜେ ଆଗମନୀ
ଚଳମିତ ଚରଣର ଛନ୍ଦେ
କଣି କଣି କରେ ଗୋ କଙ୍କିଣି ।
ମନ ପଥେ ହଜିଯାଏ କେତେ
ନୂତନଟି ଫୁଟି ଆଶା ଧରି
ଜୀବନର ମାହେନ୍ଦ୍ର ମୁହୂର୍ତ୍ତେ - - -
ଅନୁଭୂତି କାହିଁ ତାର ସରି ?
ଶେଷହୁଏ ତମିର ଶର୍ବରୀ —
ନସ୍ୱାନର ଅବସାରେ ପିନା
ପୁରାତନ ଗ୍ଲାନି ସ୍ମୃତି ଧରି ।
ଜୀବନର ସୁଖ-ଦୁଃଖ ପଥେ
ଦେଖା ଦେଲୁ ସଖି ମତେ କ୍ଷଣେ—
ଧରଣୀରେ ପଡୁ ଅବା କଣ୍ଟା
ଫୁଟୁ ମୋର ବେପଥୁ ଚରଣେ ।
ହଜୁ ଅବା କଳ୍ପନା ମୋ କ୍ଷଣେ

ଦମ୍ଭ ଅବା ଅପର ମୁହୂର୍ତ୍ତେ
ହୃଦେ ଲୁହ ଝୁଲଉବା ମୋତେ
ମୁହିଁ ଅବା ଝୁଲଏ ଗୋ ତୋତେ ।
ଅରେ ପକ୍ଷି ! ଦସାଇ ମୋହରେ
ଶରଧାରେ ଲୁହିଁ ରକ୍ତ ଭୁଞ୍ଜ
ଅବା ମୋର ଲୋତକ ବୁହାଇ
ତୋତ୍ରୁ ଦେଉଁ ଆଶ୍ୱାସନା ବନ୍ଧୁ ।
ତୋର ପଥେ ପଥେ ମୁହିଁ ଗଲେ
ଅବା ମୋର ପଥେ ତୁମ୍ଭ ଗଲୁ
ନବୁଝୁଁ ଏ ଧରା କେଉଁକାଳେ
ଆମେ ଅବା ବନ୍ଧୁଲୁ କି ମଲୁ ।
ଅନ୍ୟ ପଥେ ଆମେ ଯିବା ଚଳି
ଜାଣିବ ଏ ଧରା ପରସ୍ପର—
ପରେ ବେଣୁ ବାଜେ କି ନବାଜେ
କାନ ଡେରି ଶୁଣିବାକୁ ଫେର ।
ମୋ ଦୁଃଖର ହେବୁ ତୁହି ଅଂଶ
ତୋ ଆନନ୍ଦେ ହେବି ମୁଁ ଭୃପଷ୍ଟ—
ମୋ ଆନନ୍ଦେ ହେବୁ ତୁ କାରଣ
ତୋ ଅତୀତେ ମୋହର ମୁକତ ।
ନଥିବରେ ଆଜ୍ଞ ଜନମସ୍ତ
ମଣ୍ଡନର ମହାମନ୍ତ୍ର ପାଶେ ମୁଖରିତ ନାଦଶୀ ତନ୍ତ୍ର ।

## ବେଦନା

ବସନ୍ତ ଯାଇଣ ଫେରି, ବେଦନାତ ନ କହିଲା କଥା,
କର ଯୁଗରେ ଚନ୍ଦ୍ର ଗଣ୍ଡ ତଟ, ନିମୀଳିତ ନେତ୍ର ଦୁଇ ପତା;
    କଣ୍ଠ ମଧ୍ୟରେ ନ ଫୁଟଇ ଭାଷା,
    ଶଯ୍ୟା ପରେ ମଉଳଇ ଆଶା, —
                ଝରିପଡେ ଅଶ୍ରୁ ଅଖଣ୍ଡତା—
                ବେଦନାର ଏକ ନିର୍ମମତା !

ହିମଗିରି ତଳେ ବହ୍ନି ଜଳେ, ସମିଧତ ମିଳଇ ତା'ଭୁଲେ,
ଅନଳର ଊର୍ଦ୍ଧ୍ୱଶିଖା ପରେ ଆଦ୍ରାନ୍ୱିତ ସ୍ନିଗ୍ଧତାର ଝଲେ;
    ସଇକତେ ଢ଼ଳ ପଡେ କେନ୍ଦୁ,
    ଚେତନା ତ ଧକାଇଣ ଦେନ୍ତୁ—

## ବେଦନା

ମନ ତାହା ନାହିଁ ନାହିଁ ଭୁଲେ,
ଉତ୍କଣ୍ଠିତ ଯଉବନ ମୂଳେ ।

ପାଗବତ ତୃଳାଏ, କ୍ଷୀଣ ସ୍ୱର ପ୍ରକଟେ ସ୍ତିମିତ ନିଶ୍ୱାସୁ,
ଦମ୍ଭ-ଭେଳା ବୁଡ଼ଯାଏ ଖରେ ସୁରଭିତ ସ୍ରୋତେ ସମ୍ମୁଖସୁ;
ବନାନୀର କ୍ଳାନ୍ତ ଲତା ପେଟେ
ବିହଗର ଗୀତ ଧାର ଛୁଟେ—
ବିଚଳିତ ଶୁଷ୍କ ଟାପୁ ପରେ
ପବନର ଆକୁଳିତ ପାଂଶୁ ।



# ବର୍ଷାଶୀଷ

ମାଟିର ଭକ୍ତ ଆଜ ନେବ ହର୍ଷେ ଜୀବନକୁ ବରି ;
ହେ ବର୍ଷା ! ଶ୍ୟାମଳ ସୁନ୍ଦର ! ଆସ ଆସ ମର୍ତ୍ତ୍ୟେ ଅବତରି !
ଆଜି ତୁମ ଅମ୍ବରରେ ଆସିବ ଶୂନ୍ୟତା—
ଶ୍ରାନ୍ତ କ୍ଳାନ୍ତର ଚନ୍ଦ୍ର ତ ଶାସନ—
କର୍ମ କ୍ଷେତ୍ର ନେତୃନାଙ୍କ ମୋରେ-ଦେଖୁ ଘନ ଶକ୍ତ ଅକର୍ମଣ୍ୟ ।
ଦୁର୍ବିସହ ଏ କଠୋର ଯନ୍ତ୍ରଣା—
ନତାଦର ପାଣ୍ଡବ ଅତ୍ୟାଚାରେ
ସୁନ୍ଦରର ସୌମ୍ୟ ସାଧକ ଆଜି ବାଟବଣା ।
ଦୁର୍ବଳର ଆଜି ନେତ୍ର ନୁହେ ସାହା ;
କପାଳରେ ହାତ ଦେଇ ଅନାଇଛି ବସୁନ୍ଧର ବକ୍ଷେ
ସ୍ନିଗ୍ଧ ମାଟି ଫାଟି ପଡ଼ଅଛି ମହାନ୍ ଜ୍ୱଳନ୍ତ ଚକ୍ଷେ ।

## ବର୍ଷାଗୀତ

ଶୈବାଳିନୀ-ଝଙ୍କରେ ନାହିଁ ମଳୟର ଝସର୍ପିଳ ଧାର;
ଝଡଗର ଶୁଷ୍କ ଜିହ୍ୱା ଚଳେ ଫୁଟି ଉଠେ ମୌନ ହାହାକାର;
ବହ୍ନି ଢାଳେ ଏ ପ୍ରକୃତି ପାଞ୍ଜରର ଛଳ
ଜ୍ୱଳନ ଜ୍ୱଳନ—
ଆସ ଆହେ ମାଟିର ଭୂପତି ଝୁର ଗ୍ରୀଷ୍ମ-ରଶ୍ମିରୁ ଦଳ ।
ଧୂଳି ଧୂସରିତ ନଭ ପଥେ ଚାହିଁ ଥକିଲାଣି କଜ୍ଜଳ ନୟନ ;
ଦୁଇ ଗଣ୍ଡେ ଦୁଇଧାର ଅଶ୍ରୁ—
ଝରନ୍ତି ସେ ଶୁଷ୍କ ନଦୀ ସମ;
ଆସିନାହିଁ ବର୍ଷା, ସମସ୍ୱର ଆଜି ଏକ ଝର ସନ୍ତରଣ—
କେବେ ସେହି ମୃତ୍ତିକା ପରଶି ଶପଥରୁ କରିବ ଗ୍ରହଣ ?
ବ୍ୟର୍ଥ ଆଶା, ବ୍ୟର୍ଥ ସତେ ଜୀବନଟା ଖାଲି—
କହ ବର୍ଷା
ଝର ଝର ସ୍ୱେଦରୁ ସେ ଆଜି ମଣିବକି ତୁମ କଣ୍ଠ ବୋଲି ?
ଆଷାଢ଼ ଗଳାଣି ରୁକ୍ଷ ଅନଳ ଜ୍ୱଳନ ନେଇଛି ଦେଖି ଦେଖି—
ଚଲ ପ୍ରାନ୍ତେ ନଦେଖିଛ କଣ୍ଠ ଲେଖି—
ନଷ୍ଟର ଝସ ବଇଶାଖ ସମ ପିଟାଇଛ ଶୁଭକର ଦଣ୍ଡ ;
କମ୍ବଳ ବଳକାଳିକେ ଠାଣି ନେଇ
ସିନ୍ଧୁ ବକ୍ଷେ ଝଙ୍କାରିତ ଖଣ୍ଡ ;
ପାଣବକ ଘୋର ଅତ୍ୟାଚାର
ମୃଗକୁଳ ଭୁଲାଇ ସେ ନେଇ ତଟି ଚପି ଦେଇଅଛି ମାଡ଼ି ;
କଳି ଯୁଗର ଅଦ୍ଭୁତ ଗୀତ—

## ନାନ୍ଦୀ

ମାଂସଚରର ସ୍ୱର୍ଣ୍ଣମୃଗର ମାୟା ଦଗାଦିଅ ବଂଧୁ ରଜନୀତି ।

(୨)

ଆସ ଆଜ ଶ୍ରାବଣ ଧୂସର ଶର ଅଭିଗମ !
ନିତ୍ୟ ଝର ଝର ସୁଧା ଜଗଜନ ପୂଜ୍ୟ ଧାମ !
ତବ ମହାସ୍ପର୍ଶ ଲଭି
କୋଦାଳେ ଲଙ୍ଗଳେ ମୂର୍ତ୍ତି ଲଗାଇବ ହାତ ;
ଉଠିବ ଜନ୍ମନ୍ତେ ଗାଇ ନୃତ୍ୟ ମୋର ମାଟିର କଣ୍ଠ ;
ମାଟି ଭକ୍ତ ପୂଜିବ ତା' ମାଟିର ଦେବତା—
ଯେ ନେବ ତା'ବ୍ୟଥାକୁ ସାଉଁଟି କହି ଧୀରେ ପଢ଼ୁଟି ଏ କଥା ;
ତାରେ ସେ ପୂଜିବ ପ୍ରାଣ ଦେଇ—
ପାଇବ ସେ ଅମୂଲ୍ୟ ଫସଲ ;
ସାଧନା ଦେବ ସଫଳତା—
ଆସ ଆହେ ମାଟିର ଦେବତା !

(୩)

ପୁଲକନ୍ତୁ ବସୁନ୍ଧର ଆଜ ତବ ଅମୃତ ପରଶେ ;
ହେ ଯାଯାବର ! ଆସିଚ ବର୍ଷକରେ ମୋର ଏହ୍ନଦେଶେ—
ଉନ୍ମେଷ ତବ ଫୁଟିବ ସ୍ୱପ୍ନ କୁନ୍ଦ କାଶ—
ଅଭିସାରେ ଚହଟିବ ଶ୍ୟାମଳ ସୁବାସ—
ସଞ୍ଚରିବ ମଉଳିବା ଆଶା , ନଦୀ କୂଳେ ପଡ଼ିବ ଚହଳ—
ତୋ ଚୁମ୍ବନେ ଲଭିଯିବ ଦୁସ୍ଥ ଜୀବନର ଝଞ୍ଜାଟ ସକଳ ;
ପାଷାଣ ମଣିବ ମନେ ମହା ସମ୍ମାନ—

## ବର୍ଷଶୀଷ

ଜଳ-ପ୍ରିୟା ଲେଖିବ ତା ବୁକେ ;
ମୃତ୍ୟୁଞ୍ଜୟ ସଙ୍ଗୀତ ଫୁଟିବ ଜୀବନର ଛିନ୍ନ ତନ୍ତ୍ରୀ ମୁଖେ ;
ଉତ୍‌ଥିତ ଭାବନା ତାର ଖୋଜିବ ଭାଷାକୁ—
ପବନର ଗନ୍ଧ ଗଉରବ ଉଟଜ ସିନା ଚହଙ୍କ ନାସାକୁ ;
ହେ ବର୍ଷା !
ତୃପ୍ତି-ବଧୂ କରିବ ବନ୍ଦନ ହୃଦେ ଆପି
ତବ ଉନ୍ମାଦକ ଚରଣ ଯୁଗଳ ;
ହେ ଚପଳ !
ଆସ ଆଜ ଭୁବନେ ଓହ୍ଲାଇ ହର୍ଷ-ଅଶ୍ରୁର
ନେଇ କରି ଛଳ ଛଳ ।
ଏଇ ବନ ବୁକୁ ରଞ୍ଜିଲଣି ପୁଷ୍ପ—
ଶୁଭିଲଣି ମୟୂରର କାହାଳୀ—
ନାଚିଲଣି ତୃଷାର୍ତ୍ତ ଚାତକ—
ଆମ୍ଭେ ମୋର ଦରିଦ୍ର-ସଂଖାଳ
ବଞ୍ଜୁଳର ମଞ୍ଜୁଳ କୋରକେ
ଲଭିଲଣି କର୍ପୂର ଆଲଙ୍ଗ
ଶ୍ରାବଣର ସୁଗନ୍ଧିର ସଙ୍ଗେ ।
କେ କହିବ ମାଟି ଭକ୍ତ କଥା
ଆଜି ତାର ଚିତ୍ତ ଉଦ୍ବେଳିତ—
ଦଳ ଦଳ ଘନ ଦିବେ ବୃଷ୍ଟି
ହୃଦେ ଭରି ଆଶାର ସଙ୍ଗୀତ ;

# ଦ୍ୱାଦଶୀ

ମେଘାଳେଙ୍କୁ ଅସୁର ଆଦେଶ
'ମୂର୍ଖ, ଅଜ୍ଞାନ ଅବୋଧ ବାଳୁତ !
ଯାଅ ଶୀଘ୍ର
ସ୍କନ୍ଧେ ତୋର ହଳ ଧରି ଆସ ।'
ମାଟି ଭକ୍ତ ଧାଆଁନ୍ତି କୁଟୀରେ
ହଳ ସ୍କନ୍ଧେ କେଦାରେ ଚଳଇ
ଆଗେ ଆଗେ ବଳଦ ପଛରେ
ଗୁଞ୍ଜିତ ହୁଅଟି - - - - - -
ମୃଦୁ କଣ୍ଠେ ଡାକଲା ଫୁଟଇ !
କବି ବସି ଲେଖଇ କବିତା, ଗାୟକ ଗାଏ ମଧୁର ଗୀତ,
ଚିତ୍ର-ଶିଳ୍ପୀ ଆଙ୍କେ ନବ ଛବି ,
ମେଘ କୋଳୁ ରସ ଆସେ ସ୍ରବି ।
ଗୁରୁ ବଜ୍ର ନାଦେ କହେ ଶମ୍ପା ଶିରେ ଢାଳି ମଙ୍ଗଳ ଗୁମର
'ହେ ମୋର ମାଟିର ତନୟ !
ଧରଣୀର କର୍ମ-ରଥେ ହେଉ ତୁମ ନିତ୍ୟ ଅନନ୍ତ ବିଜୟ ।'



# ଅମୃତ ଅନୁଭବ

ଲିଭିନାହିଁ ଲିଭିନାହିଁ ଲିଭିନାହିଁ ଦୀପ
ପଞ୍ଜବନ ତଳେ ଆଜି ଜଳେ ଦପ ଦପ ।
ପ୍ରଣୟର ରଙ୍ଗରବ ଭ୍ରୂକ୍ଷେପ ମୁହିଁ ସଖା
ଜୀବନର ଜଞ୍ଜାମରା ପଡ଼ଇ ହେ ଦେଖା ।
ହୃଦୟ ଇନ୍ଧନ ଅଜି ଲାଗି ବେଢ଼ ପାଶେ
ଝର ରଙ୍ଗରେ ସେ ପୁଣି ଜଳଜଳ ଆସେ ।
ଅର୍ଦ୍ଧ ଝଟି ପାଇଁ ତାର କୋମଳ ଚରଣ
ତଥାପି ଜୀବନେ ଦିଏ ଅମୃତ କରଣ ।



## ହେ ପାନ୍ଥ ନହୁଅ ଅଧୀର

ହେ ପାନ୍ଥ !
ଆଜି ପୁଣି ସେଇ ତ୍ରିବେଣୀ ସଙ୍ଗମ—
ତୀର୍ଥ ପଥେ
ମେଲିଛତ ସେଇ ଆଶା-ଡଣ୍ଡ—
ଥରେ ଯାହା
ଚକ୍ରାବର୍ତ୍ତେ ଫେରିଥିଲ ଅଙ୍ଗନେ ବାହୁଡ଼ି !!
ପୁଣି ସେଇ ପ୍ରାଚୀନ ପ୍ରଶ୍ନ—
ଥରେ ଯାହା ଯାଇଥିଲ ଜିଣି !!
କି ଲଭ କହତ ଭଲ ?
ଜୀବନର ଅର୍ଦ୍ଧ ପଥେ
ସକଳ ସାଧନା କରି

## ହେ ଚାନ୍ଦ ନହୁଅ ଅଧୀର

ଅସୀମକୁ ନ ଥିଲତ ଧର ।
ହେ ଜୋଛନ ଚାନ୍ଦ !
ଘୁଞ୍ଚି ଆସିଛ ଲେଉଟି ?
ଅଶାନ୍ତ ଢେଉ । ଦେଖ !!
ଜଡ ଚାନ୍ଦ !
ବନ୍ଧକ ପାଶବ ଛଟା
ଡମ୍ବ ଧବ୍
ଏ ଦୂରନ୍ତ ପାନାସ୍ଥଳେ ?
ଭ୍ରଧାମର କ୍ଷୀଣ ଶିଖା
ରତ୍ନବଛ ଅଙ୍ଗନେ ?
ଏଇ ଅଙ୍ଗେ
ବନ୍ଧକ ପାଶବ
ମାଧନାର ନାଭୁଡ଼ ଆଘାତ ?
ଦେଖ ଚାନ୍ଦ !
ନୁହେ ଏତ ନୀଳା ପୁତ୍ତଳିକା—
ନୁହେ ଏତ ପ୍ରିୟା ସାଥେ ପ୍ରେମ କଣା ଢଳା ;
ସଙ୍କଟ— ସଂଗ୍ରାମର କୁହାଟ—
ଦୂରେ ଗର୍ଜି ଉଠେ ଭୀମକାନ୍ତ ଗୀତ—
କ୍ଲାନ୍ତ କ୍ଷୁର୍ଣ୍ଣ ଦନ୍ତ ସୈନିକରେ
ଉତ୍ତୁଙ୍ଗ ଲହରୀ
କୁମ୍ଭୀର ସମ ପାଟିଫାଡ଼

ଜାଟଙ୍ଗା

ଅଷ୍ଟ କେତନ୍ତ ଅନାଇ
ଗ୍ରାସି ଦେବା ପାଇଁ କନ୍ଦୁଛ ଧରଣୀ ;
ନଭସ୍ଥଳ ତ୍ରିଭୁବନ ଭେଦ
କରୁଅଛି କାଳଗର୍ଭୀ ଝଞ୍ଜାବାତ
ଉଦ୍ଭଟ ସଞ୍ଚରଣ ;
ଅନନ୍ତ ବିସ୍ତୃତ ପଥେ
ଦକ୍ଷିଣେ ଓ ବାମେ
ପ୍ରକୃତିର ଦୋଳାୟିତ କ୍ଳାନ୍ତ ତନୁ-ଲତା
ଥରି ଉଠେ ମୂର୍ଚ୍ଛିତ ଯନ୍ତ୍ରାରେ ;
ମାନବର ଜୀର୍ଣ୍ଣ ଇତିହାସ—
ବିକ୍ଷୋଭିତ ଆକୁଳ
ଅଶ୍ରୁ-ମୁକ୍ତା ଫଳ—
ଛନ୍ଦି ବିଚ୍ଛୁରିତ ।
ଦେଖ ପାନ୍ଥ !
ସୁଦୂର ତଟିନୀ ତଟେ
ବିଶାଳ ବଟ ଦ୍ରୁମ ତଳେ
ଛୁଦ୍ରାପ୍ଳୁଣୀ କଳା ଶାଢ଼ୀ ପିନ୍ଧି
ଯେପରିକ କ୍ଳାନ୍ତ ନବାରୁଣ ହାଇ ମାରୁ !
ବାମ ଦିଗେ ଅଶୋକ ଦୁର୍ଗ—
ମେଘନାଦ ପ୍ରାଚୀର--
ଟଳ ମୃତ ସ୍ଥିତ ;

# ହେ ପାନ୍ଥ ନହୁଅ ଅଧୀର

ବିଳାସ-ଭୋଗ
ପ୍ରେମିକ-ପ୍ରେମିକାର ଭୁଜ ବନ୍ଧନ—
ମତ୍ତ ଉଚ୍ଛୃଙ୍ଖଳ ଅତ୍ୟାଚାର—
ରଣ ଦ୍ୱେଷ—
ଚଣ୍ଡାଶୋକ ପାଲଟିଲ ଆଜ ଧର୍ମର ଦ୍ରଷ୍ଟା :
ରକ୍ଷିତ ସୁଦୃଢ଼ ଦୁର୍ଗ
କରି ଧ୍ୱସ୍ତ ସେମାନଙ୍କ ।
ଜୀବନ-ପ୍ରବାହେ ବାନ୍ଧନାଅ ଅତୀତରେ
ତବ ତଟ ଲଙ୍ଘି ଝଞ୍ଜା, ବୃଷ୍ଟି ,
ବାତ୍ୟା, ପ୍ରଚଣ୍ଡ ପ୍ରଳୟ ,
ପୁଣି ପ୍ରବଳ ତୁଷାରପାତ ।
ଯୌବନର ସୁଷମା ଢଳ ଢଳ ଅଙ୍ଗେ
ସହିନିଅ ସବୁ କ୍ଲେଶ ପାନ୍ଥ –
ନହୁଅ ଅସ୍ଥିର ;
ଗିବ୍ ମନ ହୁଅ ଧୀର ।
ସେ ପଥିକ ଫେରି ,
ଆଉ ଆସିନି ଲେଉଟି—
କାନ୍ଦେ ତା'ର ଅତୃପ୍ତ ପିପାସା !
ଘୁରି ବୁଲେ ଆଖେ ପାଖେ
ବୁଭୁକ୍ଷିତ ପ୍ରେତ ତା'ର !
ଶ୍ମଶାନ !

## ନାଦଶ୍ରୀ

ଦର ପୋଡା ମୁର୍ଦାରର ଗନ୍ଧ—
ସ୍ଫୁଲିଙ୍ଗ—
ମତ୍ତବାତ—
ଊର୍ଦ୍ଧ୍ୱ ନଭେ ଉଡାଇଛି ବହ୍ନିର ପତାକା !
ସୃଷ୍ଟିର ଲୀଳା—
ଏଠି ତାର ସରମାପ—
ଅହୋ, ଉସ୍ମର କେଡେ ଅହମିକା !!
ଏତେ କଣ୍ଠ ଲୁଚିଯାଏ
ଆପଣା ସଇତେ
ମୁଗ୍ଧ କଣ୍ଠ ।



# ମନେନାହିଁ

ଦେଖିନାହିଁ ତୁମକୁ ମୁଁ ତପନର ମଧ୍ୟାହ୍ନ ମୟୂଖେ
ଅବା କେଉଁ ଜ୍ୟୋତ୍ସ୍ନାର ଆଲୋକେ
ବସନ୍ତର ମଣ୍ଡତ ତଳେ ଅବା କେଉଁ ଚୂତ ପଥ ପ୍ରାନ୍ତେ
ପିକର ସୁଶ୍ରାବ୍ୟ କଣ୍ଠ ସ୍ୱରେ ଦେଖିନାହିଁ ତୁମକୁ ମୁଁ କେବେ
ଜୀବନର ଆରମ୍ଭେ ଅବା ମୋର ଅନ୍ତେ ।
ଦେବାଳୟେ ଡାକେ ଘଣ୍ଟା ଆରାଧନାର ମୃଦୁଳିତ ଗନ୍ଧେ
ମୃଦଙ୍ଗର ନିକ୍ୱଣିତ ଛନ୍ଦେ
ନିଶୀଥର ଦୁଇଟି ନେତ୍ରେ ଶ୍ଳଥେ ଯେବେ ପରସ୍ପର ଅନାଅନି
ପ୍ଲବଙ୍ଗ ପକାଏ ଡାପ, ଦୃଷ୍ଟି ଦୂରେ ଗ୍ରୀଷ୍ମ ନିର୍ଝରିଣୀ
ଦେଖିନାହିଁ ତୁମକୁ ମୁଁ ଥରେ

## ନାଦଶ୍ରୀ

ନିଭୃତ କନ୍ଦରେ, ଅବା ଅନ୍ନପାନ ଧାରେ,, ଅଶ୍ରୁପାତେ ଅବା ଅବସରେ,
ବଂଶୀର ସେ[illegible] ସ୍ୱରେ, ଅବା ମୁରଲୀର ଅସ୍ପଷ୍ଟ ରାଗେ
ଶିଶୁର ଜ୍ଞାନ ବୋଧ ନେତ୍ରେ ଦେଖିନାହିଁ ତୋତେ
ଅମ୍ବରର ବିସ୍ତୀର୍ଣ୍ଣ ଧୂମ୍ରିଲ ଗଗନେ ଅବା କେଉଁ ପଲ୍ଲୀର ସରଳ
ଶୁଭ୍ରଶୋଭାରେ
ନଦୀର ତରଙ୍ଗ ଆଘାତରେ ଅବା ହରିଶ୍ଚନ୍ଦ୍ରର ମହାଦାନେ
ଦେଖିନାହିଁ ତୁମକୁ ମୁଁ କ୍ଷଣେ ;
ଜୀବନର ସେ କେଉଁ ଲଗନେ ବୁଲିଥିଲି ବୃଥା ଅକାରଣେ
ଅବା କେଉଁ ସୁଧା ଅନ୍ୱେଷଣେ
ଦେଖିଲି ମୁଁ ତତେ
କୁହୁଡ଼ି ଆବୃତ ସେଇ ବରଫର ମାଡ଼େ ଝୁଲୁଥିଲୁ ତପ୍ତ ଜଳବିନ୍ଦୁ ନେଇ
ସେଇ ତୁଇ ଦେଖିଲାତ ମୁହିଁ
ବର୍ଷିଲ ନମିତ ପାଶେ ଏବେ ମୋର କିଛି ମନେ ନାହିଁ ।

ଭଦ୍ରକଣି, ୮-୩୦,
୩-୯-୧୯୫୪ ।

—•—

## ପର୍ତ୍ତୁଗୀଜ ! ଛାଡ ଆଜି ଗୋଆ

ପର୍ତ୍ତୁଗୀଜ ! ଛାଡ ଆଜି ଗୋଆ
ତୁମର ଓ ଆମର ସାକ୍ଷାତ ଯୁଦ୍ଧେ ନାହିଁ ଯେବେ ଏ ଦୁନିଆଁ
ତୁମେ ତାକୁ ଧଶଚରେ କିଆଁ ?
ପର୍ତ୍ତୁଗୀଜ ! ଛାଡ ଆଜି ଗୋଆ ।

ବହ୍ନିଦହନ ହେଲଣିରେ ସଖା
ତୁମର ଓ ଆମର ବନ୍ଧନ,
ଲଗିଲଣି ଦୁର୍ବିଷହ, ମନେ
ଜଳିଲଣି ବିପ୍ଳବ ଇନ୍ଧନ;
ଉଠିଲଣି ମାନବ ଶରୀରେ
ଦାନବର ବିଦ୍ରୋହ ଅନଳ,
ଝଟିକାର ତୀବ୍ର ସୁରା ପିଇ
ହୋଇଛୁରେ ଆମେ ମତୁଆଲ;

(ତୋର) ମନ୍ଦବୁଦ୍ଧି ଆଉ ଅତ୍ୟାଚାର
ପର୍ତ୍ତୁଗୀଜ ! ଛାଡ଼ ଆଜ ଗୋଆ, ସେଠି ତୋର ନାହିଁ ଅଧିକାର
ତୋର ସେଇ ମ୍ଲେଚ୍ଛ ଅନ୍ତରସେ ପ୍ରସବିତ ଘୃଣ୍ୟ ପୁଞ୍ଜିପତି
ଜନତାର କଣ୍ଠେ ବାଜିଚରେ କେତେ ସେଇ ରକ୍ତଶୋଷା ଦାନ୍ତ
ଛପୁଡ଼ିଛ କେତେ ବକ୍ଷ ଧରି ଜନନୀର ଶୁଷ୍କ କ୍ଷୀର ଧାର
ଶିଶୁ କଣ୍ଠେ ଟାଣିଛରେ କେତେ ଚକ୍ଷୁହୀନ ହାତ ହତଆର
ନାହିଁ ଆଉ ଆଜି ତୋର କ୍ଷମା
ଦକ୍ଷିଣର ଗଗନ ସିତାନେ
ଦେଖିଲିଣିରେ କୃଷ୍ଣ ମେଘ ଜମା ।
ଶୁଭିଲଣି ମେଘର ଦୁନ୍ଦୁଭି
ଉଠିଲଣି ଆକାଶକୁ ଦଳ
ଝଡ଼ ଆଜ ଦାନ୍ତ ଚପି ହସେ
ଫଟା ମେଘ ତଳେ ଚଞ୍ଚଳ ଖେଳ,
ବତାସ ଯେ କରେ ରେ ମନ୍ତ୍ରଣା
ଅଶନି ଯେ ଚହଟାଏ ତା ଛୁରି
ମେଘ ବକ୍ଷେ ମୁହୁର୍ମୁହୁ ଆଜ
ଭ୍ରୂକୁଟିରେ ଶମ୍ପାର ଶିକୁଳି
ସେଇ ଦଳେ ଯାଉଛିରେ ଉଡ଼ି
ବୃଦ୍ଧତର କୃଷ୍ଣ ସେ ଈଗଲ
କୁଳପୂର୍ଣ୍ଣ ବାଡ଼ ବକ୍ଷେ ଝାଉ ,

ପର୍ତ୍ତୁଗୀଜ ! ଗୁଡ ଆଜ ଗୋଆ

ଦୃଷ୍ଟି ମୋର ଥିଲା ତାର ସାଥେ
ଭୁବନକୁ ଉଠୁଥିଲା ଥରି
ନବପଥ୍ ମୋ ପଦ୍ମର ଆଘାତେ ।
ରାଜ ମାର୍ଗେ ଥିଲା ମୋର ପାଦ
ମନ ସେଇ ଗୋଆର ଖବରେ
ପଥଧାରେ ବସି କେ କଙ୍କାଳ
ଖାଉଥିଲା ପୋଡ଼ା ରୁଟି ଫାଳେ
ଉଡାଉ ସେ ଥିଲା ମାଛି ଦଳ
ଝୋଟକା ତା' ବ୍ରଣର ପୂଯ୍ୟନେ
ପାଉଥିଲେ ମଧ୍ୟାହ୍ନ ଆହାର ।
ଛୁଟିଥିଲା କନ୍ଭାକା ହଜ୍ସନ୍
ଜନତାର ଯାହା ପଥ କାନ୍ଥ
ମାନ୍ୟବର ମନ୍ତ୍ରୀ କଲେ ବକେ,
ପ୍ରଦର୍ଶନୀ ଦେବେବରେ ଉଦ୍‌ଘାଟି,
ଗାଡିଗଲା ଉଡାଇ ପତାକା
କାନେ ଆସି ବାଜିଲା ହଠାତ
ହାତେ ଧରି 'ସମାଜ' ବକାଳ
କନ୍ଧି ଉଠେ ଗୋଆର ସଂବାଦ
''ଗୋଆର ସେ ପ୍ରଥମ ସମ୍ବାଦ
ପର୍ତ୍ତୁଗୀଜ ଲୁଟି ମାଲେ ପ୍ରାଣ
ତେଜଚନ୍ଦ୍ର ଶ୍ରୀ ଅମୀର ଚାନ୍ଦ ।"

ମେଘ ଝାଙ୍କେ ବସନ୍ତ ଶୈଶବ
ଶୋଣ ପଥେ ଗୃଲେ ଆଜ ଦେଖ ପୁଷ୍ପଚନ୍ଦ୍ର ପ୍ରଥମ ସୈନିକ;
ଇତିହାସ ଦେଲା ତାକୁ ବର
ଅଟେ ମୋର କଙ୍କାଳ ଜନତା
ପ୍ରଣିପାତ କର ହାତଯୋଡ଼ ।
ମୃତ୍ୟୁରଥେ ମୃତ୍ୟୁପଥେ ଗୃଲେ
ଆଜ ସେଇ ମହା ମୃତ୍ୟୁଞ୍ଜୟୀ
ଏଇ ତା'ର ଉଷ୍ଣ ରକ୍ତ ଧାରେ
ଝୋଏ ଭାଗ୍ୟ କମଳ ଫୁଟାଇ
ସ୍ୱଦେଶର ମୁକ୍ତ ପଥେ ଧାଇଁ
ମରି ସେ ତ ହୋଇଛି ଅମର
ମୃତ୍ୟୁ ତୁମେ ଜୁଝିଥିଲ ପରା
କହ୍ନା ତତେ ଫୁଟାଇ ଠାକର ?
କାହିଁ ତୁମ ସେଇ ଆସ୍ଫାଳନ ?
ଦେଖ ମୃତ୍ୟୁ ! ପଦତଳେ ତାର
ଦଳି ହୋଇ ଯାଉଛ କେମନ !
ମେଘ ଡାକେ ଗୁରୁ ଗୁରୁ ଗୁରୁ
ଭୀମ ଆଜ ଗଦାର ଆଘାତେ
ଫଟାଇବ ଦୁର୍ଯ୍ୟୋଧନ ଉରୁ ।
ବନ୍ଧୁ ମୋର ଆହେ ପଞ୍ଚଗୀଜ !
ଦିଅ ଆଜ ମଧୁର ବିଦାୟ

## ପର୍ତ୍ତୁଗିଜ ! ତୁମ ଆଜ ଗୋଆ

ଦେଖିଲିଣି ଆମକୁଚ ଚରମ
ଦୁଇଶତ ବର୍ଷ ହେଲା ପ୍ରାପ୍ତ,
ଦାଅ ଲେଗି ଘୋଷଣେ ଆଜ
'ଏଠି ଆମ ଅନ୍ତିମ ମିଳନ'
ଏଥି ଦେଲ ଆଜିରେ ବିଦାୟ
ମୁଖ ତବ ନ କରରେ ମ୍ଳାନ,
ଶ୍ରାବଣର ସୂର୍ଯ୍ୟ ଆସେ ନଇଁ
ଶକୁନ୍ତ ବନ୍ଦିଶରେ ଏଠି
ଗାନ୍ଧାରର ପଣାକାଠି ନେଇ ।
'ପର୍ତ୍ତୁଗିଜ ! ତୁମ ଆଜ ଗୋଆ
ସେଠି ତୁମ ନାହିଁ ଅଧିକାର'
ତୁମ ପଥେ ଲେଖିବରେ ବସି
ଭାରତର ନବ ପଞ୍ଜିକାର
ଆଜକାର କାବ୍ୟକ ସ୍ୱାକ୍ଷର
ଅଯନ୍ତା କାଳକୁ ଏ ହେଉ ଜନତାର ଆଦ୍ୟ ଇସ୍ତାହାର ।

୨୯·୬-୧୯୬୪



# ଝଡ଼

ଘାସ ପରେ ଅଛ ଉଠେ
ଦବସର ଗର୍ବ ଅମ୍ଳାନ
ନଶି ହୁଏ ଅମାବାସ୍ୟା ସ୍ପର୍ଶେ
ବ୍ୟଥାର ସହାନ୍ତ ମୋର
ପୁଞ୍ଜ ଭଙ୍ଗେ ଗଗନ ନନ୍ଦନେ—
ଜଳଧିର ଫେନଯୁକ୍ତ ଊର୍ମି
ବେରୁଆ ଉପଲେ
ମାରେ ତା'ର ଫେଣା
ଟଳି ଆସେ ଧୃତି;—
କ୍ଳାନ୍ତ ଏ ଗନ୍ଧବହ

## ଝଡ଼

ଘଟଇ ଦୂର ଚକ୍ରବାଳେ
ପକ୍ଷୀ ଯାଏ ପକ୍ଷୀ ଆସେ ବହୁ
ଶାନ୍ତୁଏ ନାହିଁ ତାର କ୍ଷୁଧା
ଶଙ୍କିତ ତାʼ ଅନ୍ତର
ଧଂସ ପରେ ସୃଷ୍ଟି କରେ ଝଡ଼ ।

ଅଂଶୁଳି ପାମ୍ପିଙ୍ଗ-୮,
୧୦-୮-୧୯୫୪



# ଜୟଦେବ

କେଉଁ ମୁହୂର୍ତ୍ତ କୁଟୀରୁ ତୁମେ କବି ଚନ୍ଦ୍ରେ ସ୍ଥଳ
କାବ୍ୟ ଦେଇ ଦୁକାନ୍ତ ଦଶୋମଳ
ଜୟଦେବ ତୁମେ
ଅବତରିଥିଲ
କେଉଁ ସ୍ଥଳୀ ଗ୍ରାମେ
ଫୁଟାଇ କାସାରେ ଅମୃତ ଶତଦଳ ।
ତୁମ ଆଗମନେ ଉଠି—
ଗାଇଲା ନବ ଗୀତ ଶତ ବିହଙ୍ଗ ସ୍ୱର
ଘାଟ ଚହିଁର
ଛଳ ଛଳ ଜଳ ଚଳ
ମିଶୁଥିଲା ସେଇ ବଙ୍ଗୋପସାଗର ।

# ଜୟଦେବ

କେଉଁ ସେ ଦେବତା ଅଳସ୍ୱେ ବାଜିଲ
ଶଢ଼ାଳୀ ଶୁଭ୍ର ଘଣ୍ଟ
ଆରତିର ଧାରେ ଉକ୍କୁଟିଲ ମେଦୁରତା
ଏ କାଳେ କେଉଁ ସେ ଭଙ୍ଗା କୁଟୀରେ ଶୁଭେ
'ଗୀତ ଗୋବିନ୍ଦ' ଶିଶୁର ପ୍ରଥମ କଣ୍ଠ ।
ନୀଳ ଚନ୍ଦ୍ରର ବାନା
ଶାନ୍ତ ବକ୍ଷପେ ଉଡ଼ାଇଲ ଭୂମିତଳେ
ଶିଶୁ ଗୋବିନ୍ଦ ଖେଳେ
କହ୍ନୁତା' ଶ୍ରବଣେ ବାଣୀ
ଉଡ଼ିଲରେ ଫରଫର
ଦନ୍ତକ୍ଷତର ତଳେ ଉଭା ହେଲେ
ତ୍ରିଭଙ୍ଗୀ ବେଣୁ ପାଣି ।
ପଲ୍ଲି ବନରେ ପଦ୍ମ ଫୁଟିଲ
ଗଗନେ ଝରିଲ ହାସ
ଭୃଙ୍ଗ ଡାକିଲ ଆଧ ସଖି ଆସ ଆସ
କହିଯିବା କେତେ କଥା
ଶୁଭିଲ ଝିଙ୍କରବ
'ଦେହି ପଦ ପଲ୍ଲବ'—।

ତୁମେ କବି ସେଇ
କାନ୍ତ ପଦର
ଅମର କାନ୍ତ କବି

## ନାଟଶ୍ରୀ

ନିଖିଳ ବିଶ୍ୱେ ରଚେ ଯେବେ ତୁମର
କାନ୍ତ କାବ୍ୟ ଛନ୍ଦ
କବି ଗାଏ ତୁମ ଗୀତ
ରସ ଅଶେଷ ସ୍ରୁତ
ଅନୁଭବ ଉଦେ ମନାକାଶେ ତାର
ଭାବନାର ନବ ରଥ ,
ପାଏ ନାହିଁ ମୋର ହାତ
ମଉନର ମୁଖେ ଫୁଟେ ନାହିଁ କଣ୍ଠ
ମୁଗ୍ଧ ମୁଁ କରେ ପ୍ରଣିପାତ ।

ଅଷାଢ଼ ପ୍ରଭାତ,
୨୯-୭-୧୯୫୫



# ମାଗେ ତବ ଶେଷ ଦାନ

ଉତ୍ସବ ପରେ ଉତ୍ସବ କେତେ ବହିଯାଏ କାଳ ସ୍ରୋତ,
ନାଟକରେ ଭୂମି ରଖିଗଲୁ ମୋତେ ସେଇ ସେ ଜୀର୍ଣ୍ଣପୋତେ ।
ପତ୍ରେ ପତ୍ରେ ମୋର ଖୁଲିଗଲେ କେତେ ଚରୁଣ ଚାମୀତଳ,
ସିନ୍ଦୂର ଛଟେରେ ଫୁଟାଇ ମଞ୍ଜୁ ସିନ୍ଦୁମ ଶତଦଳ ।
ଆଗୁସାର ହୋଇ ପଡନ୍ତି ରଙ୍ଗିଲ ବନମୟୂ ନତ୍ର ନତ୍ର,
ଖସି ଯେ ପଡଣ ଅବ୍ୟୁ ଗଦଭେ ମଙ୍ଗଟି ଧନ୍ତ୍ର ଧାରୁ ;
ଗଗନେ ଦ୍ୱଧଳ ଶଶି ;
ଭୃଙ୍ଗ ଲହରୀ ସିନ୍ଧୁ କପାଟେ ଭଜାଇ ଷଡ୍‌ଯେ ଖସି ।
ଶରତ ଶୁଭ୍ର ଘଲ ରଞ୍ଜିନ ; କୁମାର ପୂର୍ଣ୍ଣ ଆଜ,
ଝଣ୍ଟୁର ଶତ ମନ୍ଧର ପୁରେ ମୃଦଙ୍ଗ ଉଠେ ବାଜ ।

ସ୍ବପ୍ନ କଳାର କଳଙ୍କ ଢାଳି ମର୍ମରେ ଫାଲ୍‌ଗୁନ ସାଜେ ;
ସ୍ନିଗ୍ଧ ପ୍ରାଣରେ ନବ ଶୃଙ୍ଖଳ ସମ୍ଭାଷା ପଲ୍ଲବ ଭଜେ ।
ତରଙ୍ଗରେ ଆଜି ଆହ୍ଲାଦଭରା ମଧୁ ମୂର୍ଚ୍ଛନା ପୂଜା ;
କେତେଟି ଦିନ ଆଜି ନୀରବ ଦେବତେ ପହୁଲାନ୍ତି ନତେ ବୁଝା ;
ଯାହା ହଜିଗଲା ଯାଉ,—
ଏ ମମ ଆଳସ୍ୟେ ବଳୟ ଶେଷ ଫୁଟିବ ନାକି ଆଜି ?
ଧରଣୀ ଗର୍ଭରେ ନାଚିଁଛି ବେଦନା, ସକଳ ଦୁଃଖ ମ୍ଲାନ ;
ଶୁଭ୍ର ଜ୍ୟୋସ୍ନା କର୍ପୂର ଜଳେ ବର୍ଦ୍ଧିତ ହୃଦୟ ସ୍ନାନ ;
ଅଧରେ ଖେଳଇ ହାସ—
ପଥେ ପଥେ ଆଜି ବିଞ୍ଚି ଚହଟେ ଅମଳ ଗନ୍ଧ ବାସ ।

ନରମ ବଦନ ସରସେ ସଜାଇ
ନିର୍ମଳ ମାଳ ଓଢ଼ଣା ଟଣାଇ
ଅମୃତ ଲେପି ଅସୀମ ଅସ୍ବନେ
ସମ୍ମାନ ଦେଇ କାହାର ଚରଣେ
ଅଗୁରୁ ପ୍ରଦୀପ ଚନ୍ଦନ ଧୂପ
ହସାଇ ରସାଇ ଅନନ୍ତ ରୂପ
ଉଲ୍ଲାସେ ଅଛି ଘୁଞ୍ଚି—

ଉଦ୍ୟାନ ଏଇ ଯଉବନ ଖେଳା , ପଲ୍ଲବିତ ପଡନାହିଁ ।
ଚକ୍‌କଣ ନଭେ ଭାସଇ ଖଣ୍ଡ ଶୁକ୍ଳ ଜଳଦ ମାଳା ,
ମଲ୍ଲୀ କୁସୁମେ ପରିପୂର୍ଣ୍ଣ ଏ ମୁକ୍ତାର ଗୁଚ୍ଛ ଡାଲା ;

## ମାଗେ ତବ ଶେଷ ଦାନ

ଗିରି ଶିରେ ଶିରେ ଶୋଭୁଛି ମୁକୁଟ ଉଷ୍ଣୀଷକୁ ଟେକ ଚୂଳ ;
ଇନ୍ଦ୍ର କୁମାରୀ ମସୃଣ ରେଖା ରଞ୍ଜିତ ତରୁ ମୂଳ ;
ଶରତ ଲଗନେ ଚନ୍ଦ୍ରଦରେ ଆଜି ହର୍ଷର ମାଦକତା ,
ଗଗନେ ପବନେ ଭୁବନେ ଟେକୁଛି ଶୁଭ୍ର ଚନ୍ଦ୍ରିକା ଛତା ;
ହେ ମୋର କର୍ଣ୍ଣଧାର !
ଟଳା ତରଣୀଟି ଏ ଭବ ସାଗର ହେବ କି ଆଜି ପାର ?
ଭୁକ୍ତ ପରେ ଆଜି ଅଦ୍ଭୁତ ବେଦନା ବଢାଏ ବନ୍ଧୁ ସମ—
ଶୁଷ୍କ ଏ ବନ ଗହନେ କାନ୍ଦେ ତନ୍ତ୍ର—କଣ୍ଠପାଳି ମମ !
ଏ ଦୀନ କୁଟୀରେ ପଡ଼ିବ କି କେବେ ଚରଣାମ୍ବୁଜ ତବ ?
କେତେ ଦିନ ପାଇଁ ସଂସାରେ ଆଜି ଅଛି ଏଇ ଅନୁଭବ ?
ସକଳ ବାସ୍ନା ଭାଜିଯାଏ ମୋର ତୁମ ପଥ ଖୋଜି ଖୋଜି—
ଏତେ ନିର୍ମମ ପାଷାଣ ଦେବତା ସତେ କି ଆସିବ ନାହିଁ ?
ହେ ମୋର ନାବିକ ପ୍ରିୟ !
ଜୀର୍ଣ୍ଣ ଆଜି ଏ ଭେଳା ଭାସିବାକୁ ମନଟି ଦିଅ ଦିଅ ।

୧୪-୧୦-୧୯୫୧ ,
କୁମାର ପୂର୍ଣ୍ଣିମା ।



# ତୁମେ ଓ ମୁଁ

ତୁମର ଓ ମୋର ନୀରବତା ମେଳେ
ଆନନ୍ଦର କ୍ଷୁଦ୍ର ନୀଡ ପାରିବତ କରଇ ରଚନା
ପ୍ରଭାତର ପ୍ରଥମ ନିଶ୍ୱାସେ
ବିଚ୍ଛୁରିତ କରେ ସବୁଜ-ବିଷାଦ
ବାତ-ଧୌତ ପୃଥିବୀ, ଆକାଶେ ।
ତୁମେ ଖୁହଁ ମତେ
ଓ
ମୁଁ ?
ତୁମକୁ
ସୂର୍ଯ୍ୟର ପ୍ରଥମ ତାପ ବାନ୍ଧେ ଦୁଇ ନୀଳ ପଲ୍ଲବକୁ ।
କ୍ଷୁଦ୍ର ସେଇ ମୃତ୍ତିକା ଗେନ୍ଦୁ ଗ୍ଲେଟ ମଥା ଟେକି

## ତୁମେ ଓ ମୁଁ

ଗୁନ୍ଥେଁ ଶାନ୍ତେ ପିପୀଲିକା
ଚକ୍ଷୁଣ୍ଣରେ ଜଳଉଠେ ସ୍ନେହର ଦୀପିକା
ଆଲୋକ ଝରେ ତାର ଶିରେ
ଉର୍ଣ୍ଣନାଭ ବୁଣଇ ଜୀବନ
ବର୍ତ୍ତୁଳ ବାସ୍ତବ
ଆମେ ଉଠୁ—ଆମର ପଲକ ଅରୁଣକୁ ଧରେ ।
ଗାଭୀର ପୀବର ସ୍ତନେ ଲାଗେ ଉଦ୍‌ଫୁଲ୍ଲ ସ୍ପର୍ଶ
ଅପ୍ରସ୍ତାନ୍ତ ମଣି ଆକର୍ଷ
ସୁଖର ଆହ୍ୱାନେ
ସମୀରର ବେଣୁ ରନ୍ଧ୍ରେ ଫୁଟଇ ପଦ୍ମ ପାଖୁଡ଼ା ।
ଚହଲିତ ନାରିକେଳ ଶାଖାମାଡ଼
ପୃଥିବୀର ଚେତନା ଭିତରେ କ୍ଷୁଦ୍ର ଶିଶୁ ଦିଏ ଖଣ୍ଡି ଉଙ୍କି
ତୁମେ ନିଅ ମୋର ମନ
ଓ ମୁଁ ? ଭ୍ରମର ଆଖି—
ଶିଶିର ଭିଜା ଘାସ ପରେ ଚଳାଇ ମୋ ପାଦ
ଚାଲିଯାଏ ଦୂର ବନ ପଥେ
ପକ୍ଷୀର କଳ କୋଳାହଳ ମଧ୍ୟେ
ଦୀର୍ଘ ବ୍ୟବଧାନେ
ପାଏ ଯେବେ ତୁମକୁ ସାନ୍ନିଧ୍ୟେ
ବାହୁଡ଼ା ଚରଣେ ମୋର ଲାଗେ ନାହିଁ ଦୁର୍ବାର ନିଶ୍ୱାସ
ମୋତେ ଦେଖି ତୁମେ ହସ

## ନାଦଶ୍ରୀ

ମୁଁ ଯାଏ ତୁମର ପରଶ
ଏ ପୁଣି ଆମର ଜୀବନ
ଏଥିକୁ ସତରେ କଣ କର  ତମେ ସମ୍ପୂର୍ଣ୍ଣ ବିଶ୍ୱାସ ?



## ଦିଅ ମୋତେ କର ଦୂବା

ସେଇ କଂକାଳ ସ୍ତୂପେ , —
ଫୁଟାଇ ଦେ ଯଦି ବସନ୍ତ ମୋତେ ଦଳିତ ଦୂବା ରୂପେ
ସେଇ କଙ୍କାଳ ସ୍ତୂପେ ।
ସେଇ କଙ୍କାଳ ସ୍ତୂପ ତଳେ ଶୋଇଲେ ଲକ୍ଷ ଜନର ଲହୁ
ସେଇ ସ୍ତୂପ ଆଜି କରିଛି କବଳ ଶତ ପିତୃ ଓ ବନ୍ଧୁ ;
ତାର ତଳେ ମାଟିରେ ଶତ ଜନତାର ଅନ୍ତର ଉଚ୍ଛ୍ୱାସ
ଦେଶ ପାଇଁ ସେ ଯେ ରଖିଯାଇ ଅଛି ଅଟଳିତ ବିଶ୍ୱାସ ;
ମାତୃର କ୍ଷୀର ଲଜ୍ଜିତ ଦଗ୍ଧ ସେଇ କଙ୍କାଳ ସ୍ତୂପେ
ସ୍ତନନ୍ଧୟର କଣ୍ଠ ତୁଟିତ ଦେଶ-ପବନ—ସ୍ତୂପେ ;
ସେଇ କଙ୍କାଳ ସ୍ତୂପେ—
ଫୁଟାଇ ଦେ ଯଦି ବସନ୍ତ ମତେ ଦଳିତ ଦୂବା ରୂପେ ।

ସେଇ କଙ୍କାଳ ସ୍ତୂପ ତଳେ ମୋର ଜନମ୍ ହେଉ ମଥା
କୋଟି ଜନ୍ମର ସୁଖ ଓ ଦୁଃଖ ଭିଜିଯାଉ ନୀରବତା ,
ଚକ୍ଷୁର ନୀରେ ଶୁଭ୍ର ଲଭୁଥା' ପଦ୍ମ ପଦତଳ
ଏ ମୋର ଅଙ୍ଗେ ଫୁଟି ଉଠୁ ତାର ଫୁଟନ୍ତ ପରିମଳ
ଅନ୍ତରେ ମୋର ବାଜି ଉଠୁ ତାର ଜୟ ଅମୃତ ଗାନ
ଜୀବନ ଲକ୍ଷ – କଳ୍ପନା—ରୁଦ୍ଧ ହେଉ ସେଥି ଅବସାନ ,

ସେଇ କଙ୍କାଳ ସ୍ତୂପେ

ଫୁଟାଇ ଦିଅ ହେ ଏ ଜୀବନ ମୋର ଦଳିତ ଦୁର୍ବା ରୂପେ ।
ସେଇ କଙ୍କାଳ ସ୍ତୂପତଳେ ଥରେ କୋଟି ଜନତାର ହିଆ
ଶୋଣିତ—ଦୁର୍ଗ ଅସ୍ଥି ଭିତରେ ଆଜି ବି ଲିଭନି ନିଆ ,
ହୁରୁ ହୁରୁ ହୋଇ ଜଳି ଉଠେ ସେଥି ଉଜୁଳାଇ ଚଉଦିଗ ,
ବକ୍ଷେ ଫୁଟାଇ ଲକ୍ଷ ନୟନ ; ଘୃଣା ଓ ଅନୁରାଗ ;
ପତି ଓ ପତ୍ନୀ ମିତ୍ର ଓ ସଖା ବନ୍ଧୁ ଓ ସହୋଦରେ
ସେଇ କଙ୍କାଳ—ସ୍ତୂପ ଅନ୍ତର ଭିଡ଼ିଛି ସେନେହ ଡୋରେ ।

ସେଇ କଙ୍କାଳ ସ୍ତୂପେ

ଫୁଟାଇ ଦିଅ ହେ ଏ ଜୀବନ ମୋର ଦଳିତ ଦୁର୍ବା ରୂପେ ।
ସେଇ କଙ୍କାଳ ସେଇ କଙ୍କାଳ ସେଇ କଙ୍କାଳ ତଳେ
ସଞ୍ଜ ସକାଳେ ବାଜଇ ଶଙ୍ଖ ଭୈରବ କୋଳାହଳେ .
ବାଜଇ ଘଣ୍ଟା ଜଳଇ ଆଳତି ବଢ଼ଇ ପଦ୍ମଳ ଧୂପ
ନିତି ନିତି ସେଠି ହସି ଉଠନ୍ତି ଲକ୍ଷ ଲକ୍ଷ ରୂପ ;—

## ଦିଅ ମୋତେ କରି ଦୁବା ।

ଲକ୍ଷ ଲକ୍ଷ ନୟନୁ ଝରେଇ ସ୍ନେହର କରୁଣା ଝର
ଦେଶ ପାଇଁ ସେ ଯେ ଭୁଲିଛି ପତ୍ନୀ ସନ୍ତାନ ଅପଣାର ।
ଭୁଲିଛି ସକଳ ସୁଖ ସୌଭାଗ୍ୟ ନିଜକୁ ଦେଇଛି ଯୂପେ
ହୋଇ କଙ୍କାଳ ସ୍ତୂପେ
ଫୁଟାଇ ଦିଅ ହେ ଏ ଜୀବନ ମୋର ଦଳିତ ଦୁବା ରୂପେ ।

ଚୈତ୍ର ଉଷା— ୭,
୧୫-୪-୫୭



## ସେଇ ମୋର ଆତ୍ମ ପରିତୃପ୍ତି

ଦେବତାଙ୍କୁ ଡରେ ମୁଁ ବହୁତ
ଭୁଞ୍ଜି ମରଣ ତାର ଗନ୍ଧରବ,
ଜ୍ଞାନ ମୋତେ ଦିଏ ନିତ ନିତ
କହେ ତାଙ୍କୁ ଜନ୍ମ ହିଁ ଗୌରବ ।
ତା'ଠୁଁ ବଳି ନାହିଁତ ନରକ
ସେଇ ଅତି ମ୍ଳେଚ୍ଛ ବସ୍ତୁବାଦ,
ତା'ର ପାଇଁ ଅଛି ମୋର ଖାଲି
ଘୃଣା ପୁଣି ନିନ୍ଦା ଅପବାଦ ।
ଅଟେ ସେଇ ଅତିହିଁ ନିଷ୍ଠୁର
ନାହିଁ ତାର ହୃଦେ ତିଳେ ଦୟା ,

## ସେଇ ମୋର ଅତୃପ୍ତ ପରିତୃପ୍ତି

ମଣିଷର ଜୀବନକୁ ନେଇ
ଇଚ୍ଛେ କରେ ଛନ୍ଦ ମହାମାୟା ।
ମଣିଷର ସାଥେ ତାର ଖେଳ !
ସାବଧାନ ଆରେ ରେ ପିଶାଚ,
ଛୋଟିଛୋଟି ଦେବ୍ ତାର ଆଜ
ଗୁଣ୍ଡ ପିବ ହେଇ ଖେଳ ନାଚ ।
ପିଇବରେ ଆକଣ୍ଠ ଭରଣେ
ତୋର ସେଇ ଝଲଝଲ ରକ୍ତ
ଖନ୍ ଖ୍ନ୍ ଖୁନ୍ ଖ୍ନ୍ ଅଜ
ସେଇ ମୋର ଅତୃ ପରିତୃପ୍ତ ।

ଚୈତ୍ର କଣି ,
୧୨.୪-୧୯୫୭

---

# ପଥ-ପ୍ରାର୍ଥନା

ଲକ୍ଷ ଲକ୍ଷ କୋଟି କୋଟି ଜୀବରାଶି
ଜନ୍ମ ଦେଲ ତାରେ ସମାଦରେ
ସବୁରି ପ୍ରାଣରେ ଦେଲ ଭରି ଅମୃତର ବିନ୍ଦୁ
ପ୍ରଭୁ ଆହା କେଡ଼େ କରୁଣାରେ ।
ସବୁକୁ ପାଳିଲ ଭଲ, ହର୍ଷେ କଲ ଆଲିଙ୍ଗନ
ସ୍ନେହ ନେଇଁ ସିଞ୍ଚିଲ ସକଳେ ,
କୃପା ଚାହେ ଅଜାଡ଼ିଲ ପ୍ରଭୁ
ଆନନ୍ଦର ସ୍ୱପ୍ନ ଉତ୍ସ ଝର ଝରେ ।
କପାଳରେ ବୁଲାଇଲ ହାତ
ପୋଛିଦେଲ ଦୈନ୍ୟ ସବୁରି ,

## ପଥ-ପ୍ରାର୍ଥନା

ମୋର ବେଳେ ହେଲ କପାଁ ପ୍ରଭେ
ଅକରୁଣ ନିର୍ଦ୍ଦୟ ନିଠୁର ।
କେଉଁ ପୂର୍ବ ପାପ ପାଇଁ ନାଥ
ଏତେ ବଡ଼ ଦଣ୍ଡା ପ୍ରତିଶୋଧ ,
କ୍ଷମ ପ୍ରଭୁ କ୍ଷମ ଦୟାମୟ
ଜୀବନର ସକଳ ପ୍ରମାଦ ।

ପ୍ରାଚ-୭
୩୧-୩-୧୯୫୭



## ସନ୍ଧ୍ୟା

ତୁମରି ନୟନ ଅଶ୍ରୁ ଝରି ଆସେ ମୋର ଦୁଇ ଗଣ୍ଡ ଦେଇ
ମୁଦ୍ରିତ ଶତଦଳର ପାଖୁଡ଼ା ଫେଇ,
ତୁମ ହୃତ୍ପିଣ୍ଡର ସ୍ପନ୍ଦନ ମାତେ ଫୁସ୍ ଫୁସ୍ ମୋର ଅନ୍ତରେ
ଅଜ୍ଞାତର କେତେକଥା ଗୋପନେ କହି ।
ହଜିଯାଏ ମନ ପ୍ରାଣ ଦୂର ଚକ୍ରବାଳେ
ମଜ୍ଜନେ ମୁଁ ବୁଜଇ ପଲକ
ତଥାପିତ ତୁମର ସ୍ୱରୂପ
ହୃଦେ ମୋର ଆଣଇ ପୁଲକ ।
ନିତ୍ୟ ନିତି ବସାଅ ଆସରେ,
କଣ୍ଠେ ମୋର ନଫୁଟାଇ ଭାଷା

# ସ୍ୱପ୍ନା

ନିରାଶାର ପଥେ ମଉଳାଅ
ଶତ ଯୁଗର ଶତଦଳ-ଆଶା ,
କର୍ଣ୍ଣେ ମୋର ଶୁଣାଅ ବାରତା
ଶକ୍ତି ମୁକ୍ତି ଅନୁରାଗ ଭରା ,
ପାଦ ମୋର ଚଳାଇ ପସାରେ
ଥରହର ତୁମେ ହିଁ ସାହାରା ।
ତୁମ ପଦ ଚିହ୍ନେ ମୁଁ ଗୁଲଇ
ମଥାପରେ ଥୋଇ ତବ ରେଣୁକା
କାହିଁ ତୁମ ଅବସାନ କହ
ତୁମେ ଏବେ ସ୍ୱର୍ଗର ପ୍ରେମିକା ।
ତୁମ କର୍ମ ମୋ ଦେହରେ ଆଣେ
ଜୀବନର ସ୍ପନ୍ଦ ଅଥବତା ,
ତୁମ ସେଇ ଆନନ୍ଦର ଜ୍ୟୋତି
ଦେହ-ଦୀପେ ଜଳାଏ ସଳିତା ।
ତୁମର ସେ ସାମ-ରସ-ଗୀତ
ବାଜି ଉଠେ କଣ୍ଠ ତଟେ ମୋର
ତୁମର ସେ ପ୍ରାଣ ଆକୁଳତା
ଭରେ ମୋତେ ବ୍ୟାକୁଳ କାତର ।
ତୁମ ହାତେ ଝରଇ ମୋ ଓଠୁ
ପ୍ରଣୟର ସ୍ୱର୍ଗପୁ ଗୌରବ ,

## ନାଦଶ୍ରୀ

ତୁମ କର ଚଞ୍ଚଳ ଚହ୍ନଟିଲ
ହୃଦୟର ସକଳ ସୌରଭ ।
ତୁମେ ଆଜ ମୂର୍ତ୍ତି ସଖା ଏକ
ଏଥି କିବା ଅଛି ବ୍ୟବଧାନ ,
ସ୍ମରଣର ନିତ୍ୟ ଆବର୍ତ୍ତନେ
ମରଣର ନିତ୍ୟ ଅବସାନ ।

ଚୈତ୍ର ଦଶମୀ,
୨୦-୪-୧୯୫୭



# ଜୀବନର ଜୟ ଗାନ

ତରଙ୍ଗ ପରେ ତରଙ୍ଗ ଆଜ ମନ ସିନ୍ଧୁରେ ଉଠେ
ଜୀବନର ସ୍ୱପ୍ନ ସ୍ୱର୍ଣ୍ଣ କମଳ ଗୋଟି ଗୋଟି ହୋଇ ଫୁଟେ ।
ମନ ଗଗନରେ ଝଲସି ଉଠଇ କେତେ ସହସ୍ର ତାରା
ତଥାପି ହେ ତହିଁ ଉଜ୍ଜ୍ୱଳାଇ ରହେ ନୟନର ଧ୍ରୁବ ତାରା ।
ନିତିନିତି ସେଇ ମୁଖ ପରଖଇ ଜଳଧି ମୁକୁର ପରେ
ନିତ୍ୟ ମଧୁର କାନ୍ତ ଲଳିତ ମୁଗ୍ଧ ପ୍ରଣୟ ଭରେ ।
ତରଙ୍ଗ ପରେ ତରଙ୍ଗ ଆଜ ମନ ସିନ୍ଧୁରେ ଉଠେ
ଏ ମୋର ମାନସ କୁରଙ୍ଗୀ ସମ କେଉଁ ବନାନ୍ତେ ଛୁଟେ ।
ଯହିଁ ଯାଏ ମନ ତହିଁ ଯାଏ ତନୁ ହରଷ ଅନୁଭବ
ଅନ୍ତର ତଳେ ବାଜଇ ମଧୁରେ ବନଝରଣାର ରବ ।

# ନାଦଶ୍ରୀ

ଉପ୍ରିନ ଡାକଲ କର୍ଣ୍ଣେ କହଇ କେଉଁସେ ଜୀବନ କଥା
ସ୍ମୃତିତଳେ ମୋର ବାଜଇକରୁଣେ ଦୂର କପୋତର ବ୍ୟଥା,
ବ୍ୟଥାପରେବ୍ୟଥା ଢେଉପରେଢେଉ ସୈକତେମାରେ ମଥା
ଜୀବନର ଏକ ନିର୍ମମ ଗୀତ ଅଖଣ୍ଡ ଆକୁଳତା।
ତରଙ୍ଗ ପରେ ତରଙ୍ଗ ଆଜ ମନ ସିନ୍ଧୁରେ ଉଠେ
ସକଳ କାମନା ବନ ଫୁଲ ସମ ସ୍ନେହ-ବୃନ୍ତରୁ ତୁଟେ।
ତୁଟିଯାଏ ଆଶା ଟୁଟିଯାଏ ପ୍ରାଣ ତୁଟିଯାଏ କାହିଁ ମନ
ନିତନିତ ମୁଁ ଯେ ଗରଳ ପାନେ କରେ ଅମୃତ ପାନ।
ସ୍ନିଗ୍ଧ ଏ ମୋର ପ୍ରାଣ
ବୁଲ୍‌ବୁଲ୍ ତୁମେ ଗାଅ ଏ ଲଗନେ ଜୀବନର ଜୟଗାନ।

ଚୈତ୍ର ଅପରାହ୍ନ-୧୧
୨୦-୪-୧୯୫୬



# କ୍ରୌଞ୍ଚ ପ୍ରୟାଣେ

ପଶ୍ଚିମର ଶୈଳେ ନଇଁ ଆସଇ ସବିତା
ଭୃଙ୍ଗ କଣ୍ଠେ ମର୍ମରଇ ଗୋଧୂଳି କବିତା ,—
ବନ ବୁକେ ନଇଁପଡେ ଧ୍ୱାନ୍ତ ଶ୍ଲଥାଧର
ଢନ ଫପ ଘାଞ୍ଚେ ଚୈଳ ତୁଟଇ ଆଖର ।
ନପୀଡିତ ମନ୍ଦ ବାୟୁ ମନ୍ଥର ଚଳନେ
ନାରିକେଳ ଶ୍ୟାମଶାଖା ଉଠଇ କଂପନେ ,
ଟାଣିଛୁ ସୁବର୍ଣ୍ଣ ରେଖା ନଦୀ କୂଳେ କୂଳେ ,
ଲଗାଇଛି ରକ୍ତଢଙ୍କା ଊର୍ମି ଚୂଳେ ଚୂଳେ ।
ପାଦ ଦେଉଛ କଳ କଳ ଅବ୍ୟକ୍ତ ଛଟିମା ,
କଣ୍ଠୀ ଉଠେ ଶୋଭେ କେଉଁ ଶାଶ୍ୱତ କଙ୍କିଣି ।

## ନାଦଶ୍ରୀ

ଦୁଲୋଳୁ ଉନ୍ମୁଖେ ବୁନ୍ଦଁ ରତ୍ନାକର ପାଶେ ,
ଯୋଗ ପାଇଁ ଯିନା ଏଇ ସୃଷ୍ଟି ପରକାଶେ ।

ଚଉଦିଗେ ଜଞ୍ଜାଳର ଆସକ୍ତି ବଦାପୁ ,
ଜୀବର ବଳୟ ପଥେ ମୃତ୍ୟୁ ଭାଳ ପ୍ରାପ୍ୟ ।
ପତଙ୍ଗ ନାଚଇ ଖେଳେ ପ୍ରଦୀପ ବଳୟେ ,
ପଶ୍ଚାତେ ବୁଭୁକ୍ଷୁ ଟେଙ୍କୀ ଛପି ଛପି ଆସେ ।

ଏତ ସୃଷ୍ଟି ମହାସୃଷ୍ଟି ବନ୍ଧନ ଏ ସୃଷ୍ଟି ,
କ୍ରୌଞ୍ଚ ଏକ ଅନାଇଛ ଡ଼ାଳ ଶୀର୍ଷ ଦୃଷ୍ଟି ;
ଆରମ୍ଭିଛୁ ଜୀର୍ଣ୍ଣ ଅଙ୍ଗ ମୃତ୍ୟୁ ନିଦ୍ରା ଭାର ,
ନେଇ ଭଳେ ଅକଳନ ସ୍ୱବର ପ୍ରସାର ।

ଜୀବନର ଶେଷ ଯାମେ ନାରିକେଳ କୋଟେ ,
ପ୍ରତିହତ କ୍ରୌଞ୍ଚ ଶେଷ ନିର୍ଘଣ୍ଟକୁ ଲେଟେଜ ,
ମନେ ମନେ ଭାସିଯାଏ ଶତ ଶତ ଚନ୍ଦ ,
ବନ୍ଧନ ଏ ଜଗତର ତା ସଙ୍ଗ ବନ୍ଧନ ।

# କ୍ରୌଞ୍ଚ ପ୍ରୟାଣେ

ଥିଲା ଯେବେ ମୁକ୍ତ ସ୍ପୃହା ଥିଲା ଶକ୍ତ ଦେହ ,
ଭ୍ରମି ଭ୍ରମି ଦେଖ ଦେଶ ରଚିଚ ଏ ନେହ ,
ପ୍ରାଚୀନ ଏ ଶାଖ ଚାରି ଶତ ବୃନ୍ତ ଛିଡ଼ି—
ମର୍ମେ ମର୍ମ ବାଜେ କେତେ ପାନ୍ଥର ନିଶୀଥ ।

ଚଞ୍ଚୁପୁଟେ ପ୍ରିୟା ଗଣ୍ଡ ଗାଢ଼ ସଂଘଟ୍ଟନେ ,
ଚନ୍ଦନସ୍ପର୍ଶ ଯା' ଦେଉଛି ଅଛି ତହୁଁ ମନେ ।
ଆଜି କେହି ନାହିଁ ସଙ୍ଗେ ଏକାକୀ ନିସଙ୍ଗ ,
କାଳ ଚତାତୃଧ ଜଣ ଅଛି ଉରୁ ଭଙ୍ଗ ।

ଶାଖ ବନ୍ଧୁ ଯେସି ଆସେ ଗୋଟି ଗୋଟି କାଟି ,
କାଳ ଶ୍ୱାନ ଅଛି ଧାଇଁ ପ୍ରାଣ ରକ୍ତ ଚାଟି ।
ଶ୍ଲଥ ଭଗ୍ନ ଭଗ୍ନ ଗ୍ରୀବା ନିସ୍ପନ୍ଦ ଆପୀଡେ ,
ନେତ୍ର ଅର୍ଦ୍ଧ ଉନ୍ମୀଳିତ ତନ୍ଦ୍ର ଚଣ୍ଡ ମାଢେ ।

ସେଠି ପୂର୍ବ ଲୋକୋତ୍ତୀର୍ଣ୍ଣ ଅନିର୍ଦ୍ଦିଷ୍ଟ ଦ୍ୱାରତ ,
ପୁଷ୍ପ ଚର୍ଚ୍ଚିଲେ ଦେହ ସୁଗନ୍ଧ ଅଲେପିତ ।
ଅଙ୍ଗେ ଅଙ୍ଗେ ଅନୁଭବେ ସକଳ ଏ ଲୀଳା ,
ନିତ୍ୟ ଅଭିନବ ଅଭ୍ରା ଧରଣୀ ସୁଶୀଳା ।

## ନାଦଶ୍ରୀ

ଲିଭିଯାଏ ସୂର୍ଯ୍ୟକର, ହେଲା ଅନ୍ଧକାର
ଧରିବକ୍ଷେ ଆଘାତିଲା କାଳର ଫୁତ୍କାର—
କାଳପାଣ୍ଡ ଝରଡର ସମାକୃଷ୍ଟ ସେଥି ,
କ୍ଷଣ ଯାଏ ବାରମ୍ବାର ସ୍ୱକଂପିତ ଦେହ ।

ଊର୍ଦ୍ଧ୍ୱ ମାର୍ଗେ ଉତ୍କ୍ଷିପ୍ତିତ ଶେଷ ପ୍ରାଣବାୟୁ ,
ଅଜନାନ୍ତେ ବେଳ ତାର କଣ୍ଟିବାକୁ ଆୟୁ ,
ଝଙ୍କି ତ ମଜ ତାହାର ପିଚ୍ଛ ପକ୍ଷ ବେନି ,
ରଚିଥିଲା ଯେଉଁ ସାରା ଜୀବନକୁ ଘେନି ।

ନଙ୍ଗ ବକ୍ଷେ ମଜ ଚ୍ୟୁତ ହେଲା କ୍ରୌଞ୍ଚ ଖଗେ
ଗତ ଯାତ୍ର ଚିରନ୍ତନ ଅନନ୍ତ ସାଗରେ ।



# ତାଦାତ୍ମ୍ୟ ମିଳନ

ଅବନତ ଶିରେ ଗୃହେ ନବ ପରିଣୀତା
ମଳ ଚେଲ ଢ଼ାଙ୍କିତ ବଦନ
ତନୁଲତା ଥର ଥର ଉଚ୍ଛ୍ୱାସ ଆବେଗେ
ମଧୁର ଏ ତାଦାତ୍ମ୍ୟ ମିଳନ ।
ବାହାରେ ଉତ୍ସବ କନ୍ୟା କାନ୍ତ ସଙ୍ଗେ ପ୍ରୀତି
ଗଢ଼ିବ ନୂତନ ଧରା ,
ଜନ୍ମଭୂମି ମାତୃସ୍ନେହ ଜନକ ମମତା
ଦେବ ଆହା ସଧୀରେ ପାଶୋର ।
ନିଜ ଜନ ଦୂରେ ଯିବେ ଭୁଲି
ପର ହେବ ଅନ୍ତର୍ହି ଆପଣା

ନାଦଶ୍ମି

ଲଜ୍ଜା ଛାଡ଼ ନବାରବ ଆଜ
କେଉଁ ମେ ଦେଶ ଅଦେଖା ଅଜଣା--
ଭୃଜ ପ୍ରାଣ ଧରିରନ୍ତ ମାଡା—
ଢ଼ଳ ଢ଼ଳ ନବ କାନ୍ତା ବେଶ ,
ଜୀବନ-ଦୁର୍ବଳ କନ୍ୟା ଚୂଲିଯାଏ,
ଚୂଲିଯିବ ଆଜ କେଉଁ ଦେଶ ,—
ଛଡ଼ି ଏ ଜଗତର ଶାନ୍ତ—.

ବିଯୋଗ ସଂଯୋଗ ଗମନାଗମନ
ସର୍ଜକର ଏକ ସୃଷ୍ଟି ପ୍ରୀତି ।
କ୍ଷୁଦ୍ର ସେ ସଂସାରେ ଆଜ
ଲଭି ଆସେ ଜୀବନ ଆଲୋକ
ଚଞ୍ଚଳେ ଜାଗିଉଠେ ବ୍ୟଥାର ପୁଲକ,
ଚୂଲିଅଛି କନ୍ୟା—
ହୃଦ ମଧ୍ୟେ ଧରି ଆହ୍ଲା ସରେ
ଜୀବନର ଉଚ୍ଛ୍ୱାସିତ ବନ୍ୟା ।
ଗଢ଼ିଲ କେ ରକ୍ତ ଦେଇ
ଫିଙ୍ଗାଇଲ ଶିଶୁକୁ ବସନ ,
ସକଳ ଜୀବନ ସଂପି
ତାହାପାଇଁ ବଳ ଆୟୋଜନ—
ଶୋକାତୁର ଜନମି ଜନନ—

# ବିଦାୟ ମିଳନ

ଯାହାର ଚରଣେ ଅର୍ପି
  କରେ ଆଜ ଅଶ୍ରୁ ବିସର୍ଜନ ।
ସବୁ ଅଙ୍ଗ ନିବାହିତ
  କିନ୍ତୁ ବାଜେ କରୁଣର ଶ୍ୱାସ
ଯାହାର ବେଦନା ଉଚ୍ଛ୍ୱାସେ
  ଯାହା ପ୍ରାଣ ହାସ ପରକାଶ !
ଏଣେ ଯାଡେ ବିଦାୟ ରାଗିଣୀ
  ତେଣେ ଡାକେ ସ୍ୱାଗତ ସଙ୍ଗୀତ,
ଜୀବନର ଏକ ସନ୍ଧିକ୍ଷଣ
  ନବ ବଧୂ ନବ ଆନ୍ଦୋଳିତ ।
ମସୃଣିତ ମୁଖ ପଦ୍ମ ପରେ
  ସୁଗ୍ରଥିତ ଅଶ୍ରୁ ମୁକ୍ତାମାଳା,
  କି ଲେଖେ ସେ ଲୁହୁ ମୁଗ୍ଧ ବାଳା,
ଖସିଲାଣି ଦୁଇ ବିନ୍ଦୁ, ପ୍ରଥମେ ଯେ
  ଟେକିଥିଲା ବିଷାଦ ନିଶ୍ୱାସେ
ଝଲସିତ ଅନ୍ୟ ମୃଦୁ ବିନ୍ଦୁ
  ନୁହେ ସେକି ଆନନ୍ଦ ବିକାଶେ ?
  ପାଦ ତାର ଆଗ୍ରହ ମନ୍ଥର
ମନେ ଅଛି ମାତୃ ଉପଦେଶ—
ପତି ଗୃହେ ପକାଇବ ପ୍ରଥମେ ସେପେ ବାମ ପୟର ।
କ୍ଷୀଣ ଭଙ୍ଗ କଟି ପ୍ରାନ୍ତେ

ଉଦ୍ଭାସିତ ଯୌବନର ଗୀତା—
କେତେ ଶାନ୍ତ ସ୍ନିଗ୍ଧ ଚପଳ ସେ ବ୍ରୀଡ଼ା
ନେଇ କୋଟଣେ ତଳ୍ପ ଉଠେ ଉଷାର କନକ କିରଣ
ଲଭେ ମହା ଗୌରବ ,
ଆନନ୍ଦ ନନ୍ଦନେ ଆଜ ଫୁଟାଇବ ପ୍ରୀତି ପାରିଜାତ
ମାନସର ସ୍ନିଗ୍ଧ ସୌରଭ !
ହେ ନୂତନ ! ସୋହାଗିନୀ-କାନ୍ତ
କି ସ୍ପର୍ଶ ଦେଇଛ ତାରେ ବିବାହ ବେଦୀରେ ,
କାହିଁ ଯାଏ କାହିଁ ଆସେ ତାର ଚିତ୍ତ
ଚପଳିତ ଦୃଷ୍ଟି ଝରେ ଝରେ ;
ଲଭି ତବ ପରମ ବନ୍ଧନ—
ଲଜ୍ଜାବତୀ କରିବତ ଆଜ
ତୁମ ପାଦେ ଆତ୍ମ ନିବେଦନ ।
ଯୁଗ ଯୁଗ ବ୍ୟାପି ସେ ସେ
ବଢ଼ାଇ ଆସିଛି ତବ ଉପହାର
ଅଚ୍ଛିନ୍ନ ସେ ଜୀବନର ଧାର—,
ତବ ଯାହା ପ୍ରଭ ପଥେ ଫୁଟିଛି ସେ ବାଳା ,
ନିଜେ ରୂପପାତ୍ରୀ ଗୌରବ କମଳ
ହେ ନବୀନ ! ଶିଖେ ତାର ଢାଳି କଲ୍ୟାଣ ଉଦକ
ବଶନଞ୍ଚ ଜୀବନ କମଳ ।

## ଶତାବ୍ଦ ମିଳନ

ବାଜି ଉଠ୍ ପ୍ରାଣ ପର୍ଣ୍ଣୀଳେପୁ
ପୂର୍ଣ୍ଣିତାର ଚଞ୍ଚମ ମୁରଲୀ
ଫୁଟି ଉଠ୍ କାନ୍ତ ଜ୍ୟୋତି ରୂପେ
ଅନନ୍ତର ସୁରଭିତ ଧୂପେ ।
ନିତ୍ୟ ନବ ଉପାଦାନେ ଗଢ଼
ସୁମହାନ ଜୀବନ ଜଗତି
କର୍ମ ରଥେ ସାଧକ ସାଧିକା
ହୁଅ ଆଜ ନିଷ୍ଠାପର ବ୍ରତୀ,
ମୌନ ଶଣ୍ଢ ନୁହେ ତୁମ ପାଇଁ—
ପ୍ରଫୁଲ୍ଲିତ ଐକ୍ୟ କଣ୍ଠ ଗାଉ ଅସୀମ ସଙ୍ଗୀତ
ଜୀବନକୁ ନିତ୍ୟ ଧାଇ ଧାଇ ।
ସଂସାରର ମହା ଯୁଦ୍ଧରେ ମୁଗ୍ଧ ମୋର କଣ୍ଠ
ସ୍ନିଗ୍ଧ ମଣ୍ଡ ଥାପି ନତ ଶିର
ପଚାରେ 'ହେ ଜୀବନ
କେବେ ପୁଣି ହେବ ତୁମର ସେ
ପ୍ରଣୟର ଶତାବ୍ଦ ମିଳନ ?'



# ପ୍ରତିଧ୍ୱନି

ପ୍ରଦୀପ କିଏ ତା ଜଳାଇଲା ଅକାରଣେ
ଦେବତା ନାହିଁ ଏ ମନ୍ଦିର ପୀଠେ
ଶୂନ୍ୟ ଦେବାଳୟ ନାହିଁ ଏଥି ଧୂପର ବାସନା—
ଅବା ମୃଦଙ୍ଗ କ୍ୱଣନ ଅବା ଆଳତିର ସ୍ନିଗ୍ଧଶିଖା
ଜାଳିଲା କିପାଁ ଦୀପ
କଙ୍କଣର ଆସକ୍ତ ନିକ୍ୱଣେ ।
ଯୁଗ ଯୁଗ ଗଲାଣି ସେ ଦିନ
ଦେବତା ତ ଆଉ ଫେରିନାହିଁ
ଅଳକ୍ତ ତ ଆଉ ଲଗିନାହିଁ
ଭଜି ପଡ଼େ ଯାଉ ଏ ମନ୍ଦିର

## ପ୍ରତିଧ୍ୱନି

ଚୂର୍ଣ୍ଣ ହେଉ ସୂକ୍ଷ୍ମ କାରୁକାର୍ଯ୍ୟ
ବ୍ୟର୍ଥ ହେଉ କାରିଗର ଶ୍ରମ
ବାହୁଡ଼େନା ଆଜ ହେ ଦେବତା
ପାଦ ତାର ନପଡ଼େ ଏ ମସୃଣ ପାବଚ୍ଛରେ ।
ଲୋଡ଼ାନାହିଁ ପୂଜାରିଣୀର ସ୍ନିଗ୍ଧ ଉପଚାର
ଫେରି ସେ ଯାଇଛି
ବାହୁଡ଼େନା ସେ ଆଜ
ଡାକ ପଡ଼ ଶତ ବାରମ୍ବାର ।
ବାଦୁଡ଼ିଛ ବାନ୍ଧିଲେଣି ବସା
ଉଡ଼ିଲେଣି ଚଟିଆର ପାଳ
ଦ୍ୱିପ୍ରହରେ, ସୂର୍ଯ୍ୟ ଟାଣେ
ଡାକିଲେଣି ଶରଧ କପୋତ
ଯାମାରମ୍ଭେ ଓ ଶେଷେ—
ଡାକିଲେଣି କୌଶିକ ସକୁଳ
ବ୍ୟାଘ୍ର ଓ ଭଲ୍ଲୁକର ହେଲାଣି କ୍ରୀଡ଼ାସ୍ଥଳ
ଏଥି ଆଜ ଅଛୁ କିବା କହ
ତୁମର ସେ ଦେବତା! ସଖାଲ ?
ଫେରିଯାଅ ଫେରିଯାଅ ସଖି
ଏଥିନାହିଁ ତୁମର ଅର୍ଚ୍ଚନା
ଧୂପ , ଦୀପ , ନୈବେଦ୍ୟ
ଆଜ ତୁମ ବୀଣାର ମୂର୍ଚ୍ଛନା ।

## ନାଦଶ୍ରୀ

ଖୋଲିଦିଅ ହୃଦୟର
ତୃଚାଦ୍ର୍ ଓଢ଼ଣା
ରୁହଁନାହିଁ ଅଚାଙ୍ଗ ନୟନେ
ଏଥି ନାହିଁ ଆଜ ସେ ଦେବତା
ଖୋଲିବାକୁ ତମ ସେ ଓଢ଼ଣା !
ଯେନବାକୁ କୁଟିଳ କଟାକ୍ଷ
ମନ୍ଥରତି ଆଜି ରୂପ ଅନ୍ତ ରୂପ
ନାହିଁ ଏଥି ହୃଦୟ ଯାତନା ।
ଧର ଥକା
ଯୁହିଁ ଥରେ
ମନ୍ଦିରର ପ୍ରତି କୋଣେ କୋଣେ
ଉର୍ଣ୍ଣନାଭର ଲତାପ୍ଲୁତ ଜାଲେ
କେହି-ନାହିଁ କେହି ନାହିଁ କେହି ନାହିଁ ଏଥି
ଫେର ସଖି ଅଶ୍ରୁ କରି ସାଥି ।

ଅଶ୍ୱିନ ଧାମ ,
୧୨-୧୦-୧୯୫୩



## ଉପାନ୍ତ

ରାଜକନ୍ୟା ଅଛି ବଡ ଦୁର୍ଧର୍ଷ
ସାଧିତ ନାହାନ୍ତି ଆଉ କେଣା
ବାପ ହେଲେ ଗାଧତ୍ୟୂତ
ଭାଇର ଉତ୍ତରାଧିକାରୀରୁ ଯାଇଛ ଫାଙ୍କି
ସେ ରାଜକନ୍ୟା ଜନ୍ମୁ ନୂହନ୍ତି ଆଉ
କେମିତି ବା ହେବେ ବାହା ରାଜକୁମାରକୁ - - - ।
ଏ ଭାଲେଣି ପଡିଛ ଧନରାନ୍ତ
ଧନର୍ବିତ ନାହିଁ ଅନ୍ଧାର
ଉହାର କଥା ଗୁଡ
ଚିନ୍ତା ତାଙ୍କୁ କଲଣି ଶୀର୍ଣ୍ଣ

ନାଦଶ୍ରୀ

ଦେଖା ସେ ଦେଇଲେଣି ନଦୀଘର କ୍ଷୀଣ ନଗ୍ନ ସମ,
ଏବଂ
ହାଡ଼ ଖିଆ କଙ୍କାଳ ପରି
ଦେଖେଇଲେଣି ସେ ଜୀର୍ଣ୍ଣ ।
ବେଶ ଭୂଷା ପରେ ନାହିଁ ତାର ସୌକ
ଖାଲିଟେ ଫାଟ ରକ୍ତ ଅବମ ଚୌକ

ବକ୍ଷ ତଳେ ଟଙ୍କର ଦାଗ ଦିଏ ଦେଖା
ଆଖିରେ   ଲିଭିତ   କଜଳ   ରେଖା
ଦୁଧ ଅଳତା ପରି ଟୋପା ଦିଶିଲାଣି
ନିତମ୍ବର ପୃଥୁଳରେ କଟି ଦିଶୁଥିଲା ସରୁ
କିନ୍ତୁ ଆଜି ଦିଶେ ମୋଟା
ହାୟ ରଜନେମା
ହାୟ ସ୍ୱଜନେମା
ଆଜି ଯେ ଦେଇଛି କେତେ ହଟହଟା ।
ଆଶ୍ୱିନର ମୃଦୁଳ କେତକୀ ଗନ୍ଧେ
ନାହିଁ ଆଜି ଆଉ ଲବଣ୍ୟବନ୍ତି ଚର୍ଚ୍ଚା
ଚଟାଉ ଗୁନ୍ଦ ପଡ଼ା
ଖେଳ କଉତୁକ, ଟାହୁଲ ଟାପରା
ଆକାଶରେ ଯାଇଚ ଲାଗି ଶତାବ୍ଦୀର ବୋମା-ଚନ୍ଦ୍ରମା
'ନାଶା ମୋତି ବୃହସ୍ପତି ଗ୍ରହନକୁ

ଚପାନ୍ତୁ

ଯୋଗ ଝେଙ୍କଟରେ ଗମା ,'
ହାପୁ ହାପୁ ଗଜ ଜେମା ।
ଜନତାର ଗୋଟିଏ ଫନ୍ଦାରେ
ଉଡତ ପାଇଚି ତାର ହିମାଳୟ-ଆଶା
ମନେ ଗଢ଼ିଥିଲି ଶ୍ରଦ୍ଧା, ବାଞ୍ଛା ହେବ ବୋଲି
ମନ ମୁତାବକ ଗୋଟିଏ ରାଜପୁତ୍ରକୁ
ସେଥିପାଇଁ ଦବା ଗଣ୍ଡ ବସି
ସାଧିଥିଲି ଫଣା
କେତେ 'ଜମ୍ବୁଦେବ'ର' ରକ୍ତ ଧ୍ୱଂସାରେ'
ପଢ଼ିଥିଲି ପାଠ
ଚନ୍ଦ୍ର ଚନ୍ଦ୍ର ଷଷ୍ଠାଗତ କରି ବାଢ଼ିଥିଲି ଅର୍ଥ
'ଜ୍ଞାତ ସ୍ୱାଦୋ ବିବୃତ ଜଘନଂ କୋକ ହାତୁଂ ସମର୍ଥ,'
ଅନର୍ଥ
ଗଜଜେମା କୂଳ କିନାରା ନପାଇ ଆଜି ଅନ୍ଧ ଆର୍ତ୍ତି ।
ଏମନ୍ତ ସମୟେ ମୁଁ ଯାଇ ଦେଖିଲି ଦୃପଗଣ
ହଠାତ୍ ମୋତେ ଦେଖି, ଗଲି ସେ ଚମକି
ସନ୍ଦେହ ଦୃଷ୍ଟି ଢ଼ାଳି ତାର ସଜଣଙ୍କୁ
ଉଠି ପଡ଼ିଲା ସେ ବସିବା ସ୍ଥାନରୁ
ମୋ ଆଡ଼ରୁ ଲୁଚିଯିବା ପାଇଁ
କନ୍ତୁ
ମୁଁ

ସେ ମୋତେ ତାର ହାତମୁଦି ଦେଖାଇବା ଆଗରୁ
କହିଲା
'ହେ ରାଜକୁମାରୀ ! ଶୁଣ, ଠିଆ ହୁଅ
ମୁଁ ପର ରଜାପୁଅ
ତମେ ରଜାଝିଅ
ମୋତେ ତମେ ଦେବକ ବାହା ,
ଇଚ୍ଛା ଯେବେ କୁହ ।
ସେ ମୋତେ କିଛି ନକହି
ଚାଲିଗଲା ମୋର ପାଦତଳୁ ମୁହଁ ଯାଏ—
'ଏ ଯୁବକଟି ରଜାପୁଅ ! ସତ କଥା କହେ'
ତା ଗୁହାଣୀରୁ ଖବର ନେଲି ମୁଁ
ଏହାହିଁ ତାର ମୋ ପ୍ରତି ଖବର
ବୁଝିଗଲି ମୁହିଁ
ମୁଁ କହିଲି
'ହିଁ ରାଜକୁମାରୀ !
ତମେ ରଜାଝିଅ
ଆଉ ମୁଁ ରଜାପୁଅ
ସେଥିରେ କୌଣସି କରନା ସନ୍ଦେହ ।'
ତଥାପି ମୁଁ ଯାହା ଦେଖିଲି
ତାର ମୁଖରୁ
ସେଇ ଧାରଣାହିଁ ଅଛି ତାର ମନେ

## ଉପାନ୍ତ

ଦୃଢ଼ ଧାରଣା
ମୁଁ ଫେର ଆସୁ ଆସୁ କହିଲି
'ହଁ ରାଜଜେମା !
ତମେ ରଜାଝିଅ
ମୁଁ ରଜାପୁଅ
ଏ କଥା ନିଶ୍ଚୟ
କିନ୍ତୁ ମୁଁ ସାଧାରଣ ଓ ଜନତାର ଏକ ଅଙ୍ଗ
ଆଜି ତମେ
ସାଧାରଣ ଓ ଜନତାର ଏକ ବ୍ୟଙ୍ଗ
ତମେ ସ୍ତ୍ରୀ
ଆଉ
ମୁଁ ପୁରୁଷ
କିନ୍ତୁ
ଜନତା ଖୋଜେଁନି ଆଜି
ଆମ ଦୁହିଁଙ୍କର ସଙ୍ଗ ।

ଶ୍ରାବଣ ସନ୍ଧ୍ୟା ,
୧୪-୭-୧୯୫୫ ।



# ଅନୁନୟ

ଆଖିବୁଜ   ମୁହିଁ ନିତି ନିତି   କରେ   ଧିଆନ
ହଜାଇ   ଦେଇ ମୋ ଗିଆନ
ତଥାପି ତୁ ମୋର ମନେ କଚିଁ । ଆଜ ଆସୁନୁ
ଦେଖାଦେ   ତୁଅରୁ   ମଜନ ।
ତୋର   ରୂପ   ପାଇଁ   ଆକୁଳ   ଚିତ୍ତ
ବୁଲଇ ମୋ ମନ କାହିଁ ସେ
ବନଗିରି   ପୁଣି   ନଦ   ନଦୀ   ଆଉ   ସାହାର
ମିଳେ ନାହିଁ ମୋତେ କିନାର ।
ଘୁରି ଘୁରି   ପୁଣି   ହଜିଯାଏ   ମନ   କାହିଁ   ସେ
ଧରିପାରେ ନାହିଁ   ହତାଶେ ।

# ଅନୁନୟ

ତୋହ୍ଲାର ମାଧୁରୀ ଦେଖିବା ପାଇଁ ଯେ
ପ୍ରତିକ୍ଷଣେ ହୁଏ ପାଗଳ
ବାଟଘାଟ ପରି ଘୁରି ବୁଲେ ମୋର ମାନସ
ତୁ ଡାକୁଗୋ ମୋତେ ଆସ ଜୀବନର 'ହରଷ'
ମୁହିଁ ସନ୍ଧାନ କରି ବୁଲେ କାହିଁ ସୁଦୂରେ
ଭୂବନ ପବନ ଦୂର ଚକ୍ରବାଳ ଆକାଶ
କାହିଁ ନାହିଁ ତୋର ସନ୍ଧାନ
ଏକ କରୁ ମୋତେ ନିରାଶ ।
ମଜନରେ ମୁହିଁ ଲୁହ ଢ଼ାଳିବାକୁ
ଭଲ କିବା ଭୁଲ ପାଉଛଗୋ
ମୋର ପ୍ରତି ତୋର ଏଇ ଅନୁରାଗ
ଏଇ କିବା କଡ ସୁଆଗ
କରୁ ମୋତେ କଂପା ସରାଗ
ତୋ ପଦେ ନମିବା ପାଇଁ ମୃପେ ନତ ରୁଲେ
ହୃଦେ ଧରି ସରାଗ ।
ଅଭିମାନ ତୁଚ୍ଛ କରନାଚ ଆଜି
ଗୃହିଁ ମୋର ପ୍ରତି ବାରେକ
ଢ଼ାଳେ ମୋର ଶିରେ ଅଂଜଳିକ
ଏଇ ମୋ ଜୀବନେ ଅସୀମ ତୃପତି
ହୃଦୟେ ମଧୁର ପୁଲକ ।
ଦୁନିଆରେ ମୋର କିଛି ଅଛି କିବା

ନାଦଶ୍ରୀ

ଆପଣାର ବୋଲି ନିଜସ୍ୱ
ମୃଣ୍ମୟ ପାତ୍ର ସମ୍ବଳ ଯାହା
ଅଛନ୍ତି ଅଛିନ୍ତି ନାସ୍ତି ।
ନେଉନାହିଁ ଆଜି କିଛି ପ୍ରତିଦାନ
ଏତିକି ତୁମଠେ ରହିଥା
ନତ ନତ ମୋର ଶିରେ ଦେବୁ ଡାକ
ଜୀବନ ଝଡ଼ର ଝଞ୍ଜା ।

ଚୈତ୍ର ପ୍ରଭାତ-୬ ,
୨୧-୪-୧୯୫୬ ।



# ଅଗଷ୍ଟ ଅର୍ଘ୍ୟ

ଆଜିର ଏ ଅଗଷ୍ଟ ପନ୍ଦରେ
ଧରିଲି ମୁଁ ପୁରାତନ ଖାତା ,
ଲେଖିଥିବା ପାଇଁ ଟିକେ ନଖେ
କଂକାଳର ଦୁଖ ଭୁଲ କଥା ।
ବର୍ଷ ବର୍ଷ ଇତିହାସ ଧରି
ଆସିଛି ସେ ନର୍ଯ୍ୟତନା ସହି ,
ଦେଶରର ଶୋଣିତ ଦେଉଳେ
ନଷ୍ପେଷଣ ମାଝରରେ ଦାଉ ।
ଜୀବନର ପୂଷ୍ପ ପଙ୍କିଳେ
ମଉଳିବା ଦେଖେ ଆଶାକଳିଁ ,

ନାଦଶ୍ରୀ

ବୁଭୁକ୍ଷିତ କୁକ୍ଷି ସ୍ୱର୍ଣ୍ଣଖଣ୍ଡେ
ନିଷ୍ଠୀବନ ମଉଚବା କାହିଁ ।
ଆଜି ତାର ଦେଶ ତ ସ୍ୱାଧୀନ—
ଉଦ୍‌ଘାଟିତ ଏଇ ଦେଖ ବାରେ
କଂକାଳର ତ୍ରିବର୍ଣ୍ଣ କେତନ ,
କରତା'ରେ ପ୍ରତିଧ୍ୱାନ ବାରେ—
ଆହେ ମୋର କଂକାଳ ଜନତା
ବୁଲନାହିଁ ଆଉ ଦ୍ୱାରେ ଦ୍ୱାରେ ।
ତୁମ ପାଇଁ ଆଜଏ ପତାକା
ତୁମପାଇଁ ଦେଶ ଏ ସ୍ୱାଧୀନ ,
ତୁମ ତପ୍ତ ରୁଧିରେ ତଆରି
ଆଜିର ଏ ଏସେମ୍ବ୍ଲି ଭବନ ।
ବେତାରରୁ ଭାସି ଆସେ ବାଣୀ - - -
ଅନ୍ୟ ଦିଗୁ କଣ୍ଠ ସମ୍ମିଳନୀ ,
ଚୂର୍ଣ୍ଣି କାହୁଁ ଉତ୍କଳନ ସ୍ୱର
ମନଭୁଲ୍ ଲକ୍ଷତ ମୂର୍ଚ୍ଛନା ;
ଦେଖ ଆହେ ଜନତା ହେ ଶୁଣ—
'ଦୋକାନତ ଆଜି ସବୁ ବନ୍ଦ
ମିଳିବନି ମୋଟେ ହେଲେ ଲୁଣ',
ଆକାଶକୁ ଚୃହେଁ ସେ ମୂଲିଆ
ଛୁଞ୍ଚେ ନାହିଁ ମେଘରୁ କରୁଣ

# ଅଗଷ୍ଟ ଅର୍ଘ୍ୟ

ଖଦରେ ତା' ଟ୍ରଉଜର କାଦୁଅ
ଗୁଲଫାଏ ନହାଙ୍କା ହଡ୍‌ସନ ;
ପରାକାଶ ଉଡ଼ନ୍ତ ମୋଟରେ—
ଚହ୍ଲିଲ ସେ ଏଇ ବାଗୁଟିକ
ଜଣ୍ଡଥିଲେ ଅଧିକ ସ୍ରୋଟରେ ।
ପଟୁଆର ଗୁଲଇ ସହରେ
ମୁକ୍ତବାନା ଉଡଇ ଲହରେ ,
ଅନ୍ଧ ଆଜ ପଙ୍ଗ୍ କୋଷ୍ଟୀ ଦଳ
ପୁସ୍ତନକୁ ଘୁଟ୍ଟ ଦେହରେ ;
ଉଚ୍ଛମଣି !
ମାନ୍ୟ ଶିଳ୍ପପତି !!
କପାଳରେ ବିଭୂତିକୁ ମାରି ,
ହର୍ମ୍ୟେ ଉଭୟହୋଇ ନମସ୍କାରେ
ଯାତ୍ରାର ସେ ବଜଲେକୁ ଠାରି ;—
ଫୁଲଜଠେ ମ୍ଲେଚ୍ଛମୁଖେ ହସ—
'ଗଡ଼ସେଟି ଗୃଜଳ କାଳିକ
ଦେବନକ ନଗଦ ସାତଣ' ।
ଆଭିଜାତ୍ୟ ମାରଇ ଜୃମ୍ଭଣ
ଆରାମର ଚୌକି ପରେ ଶୋଇ,
ସୋରଜଇ ଗୁଜାଖି ମାଦକ
ପେଟପରେ ଖେଳେ କଳା ଗୋଇ ।

ନାଭଶ୍ରୀ

ମଂାସଳ ତା' ମୋଟା ବାହୁପରେ
କାଳେ ପର୍ବେ ଜନତାର ଶ୍ୱାସ,
କହ୍ୱାଉଠେ ନାହିଁ କାହାରିତ
ତାରି ପାଇଁ ଗଣ୍ଡ୍ୟେ ବିଶ୍ୱାସ ।
ତଥାପି ସେ ମାନ୍ୟ ଶିଳ୍ପପତି ,

ତାରି ମୂର୍ତ୍ତ୍ରେ ପ୍ରତିଚରେ ଆଜ
ସୁବର୍ଣ୍ଣର ଜରିଦିଆ ଛତ ।
ସେଇ ସୌଧ ପାର୍ଶ୍ୱେ ଷ୍ଟଲଘର—
କଫି ପ୍ଲେଟ ଟେକର ମକର
ଗୋସେଇଁର ଆଙ୍ଗ୍ଠିା ଗଳ
ପୋଡ଼ , ପେଟପାଇଁ କଲବଲ ।

ଗୋଷ୍ଠିପରେ ଗୋଟିଏ ଗ୍ରାହକ
ଅସି ପାଲ୍ ସ୍ୱୀଟ୍ସ ଦୋକାନେ ,
ନିଜ ଦେହ ପାଣି କରେ ସେ ଯେ
ଅତରର ଆକଣ୍ଠି ପାନେ ।
କେ ବୁଝେ ତା ପେଟର ଗୁହାସ୍କ
ସଭିଙ୍କ ଆଗରୁ ସେ ଆସି
ଘରେ ଯାଏ କେତେ ଭେଟି କରି ।
ସନ୍ଧ୍ୟା ତାର ହଜାଏ ଭ୍ରାନ୍ତିମା
ଦୂର ମଳ କାଠ ଯୋଡ଼ କୂଳେ ,

## ଅଗଷ୍ଟ ଅର୍ଘ୍ୟ

ସିକ୍ତ'ସ୍ନିତ ସଇକତ ପରେ
କଏ ସେତୁ ପିନ୍ଧୁଣୀ [illegible]କଳ;
କଣ୍ଠେ ତାର ବାଜଇ ଆହ୍ଲୁଲ ,
ତସ୍ମ ତଳେ ନଘ ଢେଉ ଟେକା
ସହରର ମାର୍ଗେ ବୁଲେ ବ୍ୟୁକ୍
ଗତିଶୀଳ ଜନତାକୁ ପେଲି ;
ଆଜି ଏଠି ଅଗଷ୍ଟ ପନର—
ଆକାଶର ନୟନ ପଲକ
ତାସ୍ମ ମଧ୍ୟେ ହୁଏ ଥର ଅଧ ।
ପଥପରେ ଜଳଉଠେ ବଷ୍ଟ
ଝକ୍‌ମାବାନ୍ଧ ଲଗାଏ ତା'ପି...,
ଦନ ସାସ ଧୂଳି ବୁଲି ସେ ଯେ,
ଲାଗିଲାଣି ମନେ ବଡ ଫିକା ;
ଲୁଉଙ୍କିଆ ଗଞ୍ଜେ ପୋକାସ
ନାଚ ନାଚ ହେଲାଣିତ କ୍ଲାନ୍ତ
ବାରବଧୂ,—ହାସ୍ଯରେ ଧରାଣ;
ଅଜ ଆହେ ଅଟେ ...ର
କାର ପ୍ରାଣେ ନାହିଁ ତଳେ ହେଲେ
ବିଶ୍ରାନ୍ତିର ସାମ୍ୟ ଉପଭୋଗ ।
ମହାନଦୀ ସଇକତ ତଟେ
କ୍ଷୀଣ ଜଳ ହୁଅଇ ଉହ୍ୟ

## ନାଗେଶ୍ରୀ

ଶ୍ୱାନ ଚଲେ ପାଦ ଟିପି ଟିପି—
ତଜ୍ଜନର ଶବ୍ଦ ଉଚ୍ଛ୍ୱାସ !
ମନୁଆ ତା' ଘୋଡା ନାଉଟେଥ'ଛ,
କପାଇଁ ତେସ ଅନାଇ ବସିଛ
କାହାର ସେ ଆଗମନ ପାଇଁ ?
ଜୀର୍ଣ୍ଣଡୋଳା କରେ ରୋମନ୍ଥନ
ଚକ୍ଷୁ କୋଣୁ ବହି ଆସେ ଲୁହ ;
ହରି ମୃତ ଦେଲଣିଛ ସେଥି
ବାଟ ତମାମ ହେଲଣିରେ ଜୁହ ।
ପୁରୁଣା ମୋ ଖାତା ଧଣ ସେଠି ,
ବସିଥିଲି କ ଲେଖିବ ବୋଲି ;
ସ୍ୱାଧୀନ ଏ ଦେଶର ବାରତା
ଗୋଟି ଗୋଟି ଖୋଲି ଖୋଲି ଖୋଲି ।
କନ୍ତୁ ମୁହିଁ ନପାରିଲି ଲେଖି
ଶେଷ ଗଲା କଲମରୁ ଶୁଖି ,—
ଆରପାରେ ଡାକେ ଭିକାରୁଣୀ
ଦୁନିଆରେ ମୁହିଁ ଏକା ଦୁଖୀ,
କଣି ତାର ବୁଜଇ ପଲକ—
ଆଜେ ମୋର ଅଗଷ୍ଟ ପନ୍ଦର
ସେନ ମୋର ଅର୍ଦ୍ଧ୍ୟର ପୁଲକ ।

୧୫-୮-୧୯୫୫ ।



## ଗଙ୍ଗାଧର

ପଢ଼ି ନାହିଁ ପାଠ ଦେଖି ନାହିଁ
ବଡ଼ ବିଦ୍ୟାଳୟ—
ଜନ୍ ନାହିଁ ସଭ୍ୟତା ସମାଜେ
ଅବା ପ୍ରଶସ୍ତ ନଗରେ
ତଥାପି ତୁମକୁ ଉତ୍କଳ
ଅବନତ ଶିରେ ନମସ୍କାରେ ।
ମାଟିର କୁଟିର ତଳେ
ଖେଳିଥିଲ ତୁମର ଶରୀର
ଘର ପରେ ପାଳର ଛପର
ସେଇ ଶ୍ରେଷ୍ଠ କୁଟୀର ହସାଇ
ଆସିଲ ହେ ନୂତନ ଅତିଥି;

## ନାଦଶ୍ରୀ

ପ୍ରଭାତର ମାଙ୍ଗଳିକ ଲଗ୍ନେ
ଉଦିଲ ହେ ସାହିତ୍ୟ ମିହିର ।
ତୁମର ସେ ଆଗମନ ଦେଖି
ହସିଥିଲ ନାଚିଁଛ ଉତ୍କଳ
ପଞ୍ଜିକାର ଦେଖିଥିଲ କେହେ
ଭବିଷ୍ୟର ଭଲ ମନ୍ଦ ଫଳ ?
ଜାତକ କି ଲେଖିଥିଲେ ଜେଷ୍ଠ!
'ଏ ପିଲାଟି ହେବ ଶ୍ରେଷ୍ଠ କବି'
ଜ୍ୟୋତିଷ୍କାର ଥିଲ କବାକହି?
ତୁମ ଜନ୍ମେ ହସିଥିଲା ତୁମ
କୁଟୀରର ମୃଣ୍ମୟ ପ୍ରାଙ୍ଗଣ
ହସିଥିଲେ ତୁମ ପିତା ମାତା,
କିନ୍ତୁ ନୁହେ ତୁମ ଦେଶଗଣ
ତୁମେ ଉଠି ଫୁଟାଇଲ ଫୁଲ
ଏ ଉତ୍କଳ କବିତା କାନନେ
ବାଣୀ ପୂଜା କଲ ସମାଦରେ
ଝଙ୍କୃତ ହେ ଗୀତ କାନେକାନେ,
ବରପାଲି ନାଆଁ ଗଲ ଶୁଣି
ସମୀରଣ ହୁଏ କବା କହ
କୁସୁମିତ ଗନ୍ଧେ ବାଃବଣା ?

## ଗଙ୍ଗାଧର

ଉତ୍କଳର ସାହିତ୍ୟ ଆକାଶେ
ଉଜ୍ଜ୍ୱଳ ହେ ନବ ରବି ସମ
ପ୍ରଭାତରେ କୁଟ୍‌ଟିବା କଥା
ଢାଙ୍କି ପାରେ ପ୍ରତିଭା-କିରଣ
କେଉଠି ନାଶିକା କୁଞ୍ଚନ
ଅନୁର୍ବର ବଚନ
ପ୍ରତିଭାର ତୀକ୍ଷ୍ଣ କରବାଳେ
ଛିନ୍ନିଛ ତା' ଆଚ୍ଛା ପ୍ରବଞ୍ଚନ ।
ଉତ୍କଳର ପ୍ରକୃତି-କପାଳେ
ଦେଇଛ ହେ ସିନ୍ଦୂରର ଟିକା
ମୁଖେ ତାର କାଶ ମୃଦୁ ହାସ
ଶୀର୍ଣ୍ଣତାର ହସ୍ତ ମୃଣାଳରେ
ପିନ୍ଧାଇଛ କୁସୁମର ଶଙ୍ଖା ।
ବାଣୀ ପୂଜା କରିଛହେ କବି
ହାତେ ଧରି ନମ୍ର 'ଅର୍ଘ୍ୟଥାଳି'
ଉତ୍କଳର କାବ୍ୟ ଶ୍ରୀ କଳସେ
ଫୁଟାଇଛ 'ପ୍ରଣୟ ବଲ୍ଲରୀ'
'ତପସ୍ୱିନୀ'
ସକଳ ଜୀବନ ସପି
ଦେଇଛ ହେ ମୂଳଧାରେ ଶାନ୍ତି
ତେଣୁ ଆଜି ଗାଏ ଶ୍ଲାଘ୍ୟ

ନାଦଶ୍ରୀ

କରେ ବନ୍ଦନା
ଟାଇଟବ କାବ୍ୟ ସୁଧା କଣା
ଅଂଜର ଉଜ୍ଜଳ
କରେ ନମସ୍କାର
ଭଲ ପଡେ ଦେଇ ବଜପୁର ନିଙ୍କା
ହେ ଗଙ୍ଗାଧର
ତୁମେ ସେଇ
ମୃତ୍ୟୁ ପାର ଲେଖିଗଲ ନିଜ
ଜୀବନର ଜନନ ପତ୍ରିକା ?

## ଶ୍ରୁତ ନର୍ତ୍ତ୍ୟ

ବସନ୍ତର କଉମୁଦୀ ଚର୍ଚ୍ଚିତ ପ୍ରାଙ୍ଗଣେ
ଜାଳିଲକେ ଖଦ୍ୟୋତର ଉଜ୍ଜ୍ୱଳଦୀପ୍ତ ?
ଚମକଲା ବଜ୍ର-ବକ୍ଷ ଗୁରୁ ଗରଜନେ
ସ୍ୱପ୍ନ ଭଙ୍ଗେ ଚିହିଁଲକେ ନେତ୍ର ନବନ ଫେଡ଼—
ବସୁଧାରେ ଆସିଚ ଯେ ଅଜସ୍ର ବର୍ଷଣ
ବ୍ୟର୍ଥହେଲ ବ୍ୟର୍ଥହେଲା ସକଳ ତୋଷଣ ।

ମଧୁ-ଗନ୍ଧ-ମୃଦୁ-ବାହୁ-ବେଷ୍ଟିତ-ଭବନେ
କୁଣ୍ଠାର ରଜତାଙ୍କିତ ଚନ୍ଦ୍ରର ପୁଲକେ ,
ତନ୍ତ୍ରୀର ଶ୍ରୁତି ମିଳନ କରୁଥିଲ ସେଥି ,
ଗାଇଯିବ ବୋଲି ପ୍ରାଣ ମଧୁ-ରସ-ଗୀତି ।

## ନାଟଣ୍ଡୀ

ଦେଲ ସ୍ୱପ୍ନ ଭଙ୍ଗ ଅଂଧା ଚଢଲ କଳ୍ପତ
ଶୁଣିଲ କର୍ଣ୍ଣ ମୋଟେ—
ଦଧ ଅଂରନ୍ତିର ଗ୍ରାମ ଧଇବତ ନାଦେ ,
ମାରବତ ବଡଞ୍ଜକା ନୈକିଶିକ ନଷାଦେ ।



# ଦିଅ ଆଜି ଭୂମି ଅଧୀକାର

ଦିଅ ଆଜି ଭୂମି ଅଧୀକାର,
କେତେଦିନ କଷିବ ହେ ତୁମେ ଆଜି ସେଇ ମାଟିର ସନ୍ତୁର-
ଦିଅ ତୁମ ଭୂମି ଅଧୀକାର ।
ଜନତା ମୋ ସମ୍ଭାଳିଣି କେତେ
ତୁମର ସେ ବୁଭୁକ୍ଷ ଅଧାର
ତୁମେ ଗଢ଼ି ମେଳ ଓ ମଣ୍ଡପ,
ଦିଅ ତାକୁ ଅଧା ପେଟ ଭାତ ।
କହ ତାକୁ କୁଲିଆ ମୂଲିଆ
କରଛ ତାକୁ କୁକୁରଠୁଁ ଊଣା
ପିନ୍ଧିବାକୁ ମିଳୁନାହିଁ ଖଣ୍ଡେ
ଜୀର୍ଣ୍ଣ ଶୀର୍ଣ୍ଣ ଲୁଗା;-ଚିରିକୁଣା ।

ନାଦଶ୍ରୀ

ତାର ଅଶ୍ରୁ ନେଇ ତୁମେ କର
ସକାଳର ଅଧ୍ୟାପ୍ତା କଫି
ମଧ୍ୟାହ୍ନର କ୍ଷୁଧିତ ଆହାର—
ମଂାପ ତାର କଲିଜାରୁ କାଟି ;
ତାର ପ୍ରଭୁ ଏଇ ତୋ ଈଶ୍ୱର

ଜମିଦାର ପ୍ରଭୁ ଆଜ ତୁମେ ଦେଅ ତାକୁ ଭୂମି ଅଧିକାର ।
ଭୂମି କଣ୍ଠେ ଯେ ଗାଇଲା ଗୀତ
ବକ୍ଷେ ଧରି ଲକ୍ଷ୍ମୀର ଚରଣ
ତାର ବକ୍ଷ ଚିରି ତୁମେ ଦେଲ
କଣ୍ଠେ ଭରି ସଙ୍ଗୀତ କରୁଣ,
ମଂାପଳ ତା', ବାହୁପରେ ତୁମେ
ଆଙ୍କିଚ ଯେ ଚୁରିକାକୁ ହାଣି
ଶୁଖିଲା ତା' ଜଦରରୁ ସ୍ନାୟୁ
ଛିନ୍ନ ଭିନ୍ନ କଲ ଝୁଣି ଝୁଣି,--
ତାର ପ୍ରଭୁ ଏଇ ତୋ ଈଶ୍ୱର

ଜମିଦାର ! ପ୍ରଭୁ ଆଜ ଭୂମି ମାଗେ ଦେଖ ବନୋବା ଧଙ୍ଗାଲ ।
ଯାଉ ଆଜ ସାଗରରେ ମିଶି
ଯେତେ ସବୁ ସର ନଦ ନଦୀ,
ଉଚ୍ଛୁଟ ଯେ ବନ୍ୟାର ପ୍ଲାବନ;
ପାରିବକି ତୁମେ ତାକୁ ରୋଧି ?

## ଦଅ ଆଜ ଭୂମି ଅଧିକାର

ଚାଲ ଚାଲ ସେଇ ପଥେ ଚାଲ;
ଛାଡ ତୁମ ଭୂମି ଅଧିକାର
ସରଳର ସାମ୍ୟ ସୁଧା ପିଇ,
ହୁଅ ଆରେ ଶାନ୍ତ ନିର୍ବିକାର ।
ଦନ ପାଇଁ ଦଅ ଭୂମି ଆଜ
ଛଳନାର ବେବସା ଦେଖାଇ, ଭଣ୍ଡ ବେଶ ହୁଅନାରେ ସାଜ ।
ଜମିଦାର ଦଅ ଆଜ ଭୂମି
ରକ୍ଷାନାହିଁ ଆଉ ତୁମ ପାଶେ
ବନ୍ଧା ତୁମେ ଆଜରେ ପିଶାଚ
ଜନତାର ଭୁଜଙ୍ଗମ ପାଶେ ,
ଚଉଦିଗ ରୁଦ୍ଧ ତୁମ ବାଟ
ଯିବ ଅବା କୁଆଡେ ଫିଟାଇ
ହାତେ ଥିବା ଲୌହର ଶିକୁଳି
ତୋରବକ କନ୍ଧରେ ଲୁଟାଇ ?
ପଡିରହ ସେଇ ଗଡପୁରେ ।
ସାବବକଠରେ ତୋପାଇଁ ନୂଆ ଦିନକରେ ଥରେହେଲେ ଝୁରେ ?
ଜମିଦାର ଦଅ ତୁମ ଭୂମି
ହୁଅ ଆଜ ଜନତାର ଅଙ୍ଗ,
ବ୍ୟାଜ ଆଉ କଳ୍ପନାରେ ତୁମ୍ଭ
ମୁଖେ ମାତ୍ର ଶସ୍ତା ଡାଉରଙ୍ଗ,

ନାଦଶ୍ରୀ

ସ୍ନେହର ତୁଇ ଧନ ନେହରୁଅଛୁ
ନାହିଁ ଆଉ ତୋ ପ୍ରତି କରୁଣା ,
ସେକାଳ ତୋ ଦଇବରେ ଭୁଲି,
ଆଜି ତୋର ପାଇ ଅଛି ଘୃଣା,
ହୁଅନାରେ ଆଉନ୍ତୁ ଉଦ୍ଧତ,—
ସିଧା ଦିଧା ଢଅରେ ବତାଇ ତୋର ସେଇ ସକଳ ସପଦ ।
ଜମିଦାର କର ଭୂମିଦାନ.
ପୁଞ୍ଜିପତି ମୁଷ୍ଟି ସ୍ବର୍ଣ୍ଣଦାନ ,
ଜନତାର ଅଧା ପେଟ ପୁରୁ
ନହେଉ ତାର ଶୋକ ଅବସାନ,- -
ଛଟନାବାଜୀ ମାରେ ଆରେ ଭିକ୍ଷା
ବୁଲି ବୁଲି ବାର ଦ୍ୱାର ଦେଶ,
ମୁଣ୍ଡ ଝାଳ ତୁଣ୍ଡରେ ପେ ମାରି;
ମୃଣ୍ଟନାକ ତାର ଖେଦ କ୍ଳେଶ ?
ଜମିଦାର ଦାଅ ଭୂମି ଛୁଟ ,
ଶ୍ରମିକ ର ଆଦରରେ ପିଶାଚ ହୁଅ ଶୁନ୍ଦ୍ର ବନୋବାର ରତ ।
ଦାଅ ଅଜ ଭୂମି ଅଧିକାର
ଦେଖାନା ତୁ ଆଉ ଲୋଭ ପଣ
ତୋର ସେଇ ମାଟି ବକ୍ଷ ପରେ
ଜନତାର ଫୁଟିବ ଜୀବନ,

## ଦଅ ଅଜ୍ଞ ଭୂମି ଅଧିକାର

ଭୁଲ ତୋର ଅତୀତର ସେଇ
ନିଷ୍କରୁଣ ତୀବ୍ର ବେତଘାତ
ତୋତେ ଅଜ୍ଞ ମଣି ସେ ଦେବତା
କରିବରେ ପାଦେ ପ୍ରତିଘାତ !
ଜମିଦାର !
ଦଅ ତୁମେ ଭୂମି ଅଧିକାର—
ଆଜିର ଏ ମଙ୍ଗଳ ପ୍ରଭାତେ କରନା ତୁ ଅଜ୍ଞ ତିରସ୍କାର !



# ଜୀବନ

ହେ ଜୀବନ
ଆଜ ପୁଣି ତବ ଜନ୍ମ ତିଥି ।
ଚନ୍ଦ୍ରାଲୋକେ ଅବା ଅନ୍ଧକାରେ
ଅବା କେଉଁ ଝଷମ ସନ୍ଧିରେ
ପ୍ରଭାତର କେଉଁ ଅରୁଣ ଆଲୋକେ
ଅବା କେଉଁ ଧୂସରିତ ପ୍ରଦୋଷେ
ପଥଧାରେ ଅବା କେଉଁ ନିର୍ଝରିଣୀ ତଟେ
ପିକ ଡାକେ ଅବା କେଉଁ ମଧ୍ୟାହ୍ନର କଳପାଠ ବାତ୍ୟନେ
ସୁଖେ ଅବା ଦୁଃଖେ,
ହର୍ଷେ ଅବା କ୍ଷୁବ୍ଧେ
ଛବିଶଟି ବର୍ଷ ଗଲା—ଯାଇଛି

# ଜୀବନ

ଯାଇଛି ସେ ଶତ
ହେ ଜୀବନ
ଆଜ ପୁଣି ତବ ଜନ୍ମ ତିଥି ।
ରଜତସ୍ମିତା ଜ୍ୟୋତ୍ସ୍ନାବୃତ ପୂର୍ଣ୍ଣିମା ଚନ୍ଦ୍ରମା
ଆଜ କ୍ଷୟ ଖଣ୍ଡିତ ପାଣ୍ଡୁର ବଦନ
ନାରିକେଳ ଚୂଳେ ସଜଳ ନଭସ ପ୍ରାନ୍ତେ
ହସେ, ଖସିଆସେ ଧୀରେ କ୍ଳାନ୍ତ ମୁଖୀ,—।
ଦେବାଳୟ ଶିରେ, ଶ୍ୱେତ ପାରାବତ
ନିଦ୍ରାରୁ ଉଠି, ଜଳସିକ୍ତ ଡେଣା ମେଲି
ଚଞ୍ଚୁ ଧାରେ ଫୋପାଡଇ
ଦୁର୍ବଳ ଆଜ ମ୍ଳାନ ପକ୍ଷ
ଯାହା ସବୁ ପ୍ରାଚୀନ ରଙ୍ଗହୀନ ସବୁ ତେଜ୍ୟ
ନବୀନର ମହୋଲ୍ଲାସେ ପୁଲକିତ ଗାଏ ।
ପଶ୍ଚାତ୍‌ପଟର ପଡିଲାଣି ଫିକା ସ୍ମୃତିର ମୂନାଙ୍କ
ଝୁଗ ବକୁଳର ଦେହେ ଶବଷର ଲୁଣ୍ଠିତ କଳଙ୍କ ;—
ଅନ୍ଧାରର ଘୋର ଉତ୍ପ୍ଲାବନ ଗର୍ଭିର ଇସ୍ତାହାର
ଝପୁର ଜୀବାଣୁ ପରି ମାରେ ମୋତେ ଜନ୍ମ ଏଥି
ହେ ଜୀବନ
ଆଜ ପୁଣି ତବ ଜନ୍ମ ତିଥି ।
ହେ ଜୀବନ
କି ଲକ୍ଷ୍ୟ ସାଧନା ତବ କହେ ମତେ ନିର୍ମମ ପୀଡନ ?

ନ୍ୟତନ୍ତ୍ରୀ

ମାତୃ ଦୁଗ୍ଧ ବାହୁତର ସରଳ ଶୃଙ୍ଖଳ୍ୟ ପରିହରି
ଆସିଲି ମୁଁ ତୋ ସାନିଧେ ଘାଟିବାକୁ ଜୀବନ
ବଣାରେ ଖଞ୍ଜିଲୁ ସ୍ୱର
ବେଣୁ ରନ୍ଧ୍ରେ ଦେଲୁ ଫୁଙ୍କି ମଳୟ
ଚାଲି କ୍ଷଣକାଳ—
ହେଲା ବଳୟ
ଭୁଟିଗଲା! ତାର
ବେଣୁ ରନ୍ଧ୍ର ହେଲା ବହୁଶତ
ଅପସୃତ ଖାଲି ଅପସୃତ
କାହିଁ ତାର ମଧୁମୟ ଗୀତ ?
ହେ ଜୀବନ
ଆଜ ମୁକ୍ତି ତବ ଜନ୍ମ ତିଥି !
ହେ ଜୀବନ
ପତତ୍ରର ମର୍ମରିତ ସ୍ୱନେ ଧର୍ବଳୟ କଂପନ ।
ନଭ ଶିର ଫୁଟି ଉଠେ ତରୁଣାର୍କ ଲପନ
ସିନ୍ଧୁ ବକ୍ଷେ ଭାସେ କୁଙ୍କୁମିତ ଭେଳା
ଲହରୀ ଚୁମଇ ସୈକତ ମସୃଣ ଶମ୍ବୁକ
ସବୁ ଆଜ ସବୁ ଶୋଭା ଠୁଳ କରି ବଦଳନ୍ତ
ଥୋଇଛ ପ୍ରକୃତ ରାଣୀ ଅଖଣ୍ଡ ସୌନ୍ଦର୍ଯ୍ୟ
ତଥାପି ମୁଁ ଯାରେ ନାହିଁ ଭେଟି
ଏକ ଭଲା କହନ୍ତି କଦର୍ଯ୍ୟ ?

## ଜୀବନ

ହେ ଜୀବନ
ଭୁଲପାଏ ଆପଣାର ଗୋଟି ଗୋଟି ଶ୍ୟାମସ୍ନିଗ୍ଧ ବନ ।
ମୁକୁଳଗୁଚ୍ଛ ଧରଇ ପଲ୍ଲବ
କେତେ ନୂଆଁ
କେତେ ପୁରୁଣା
କେତେ ବା ନୂଆଁ ଓ ପୁରୁଣା
ଭେଦ-ଅବସାଦ
ଅପମାନ ପରାଭବ
ଜୀବନର ତନ୍ତୁତଳେ
ଶବକଳ୍ପ ପ୍ରାଣ ମୋର
ଆଖିବୁଜ
ମର୍ମମୂଳେ ବୁଲାଏ ଯେବେ ସେ ହାତ
ଦେହର ଗଭୀର ନିଶୀଥେ
ଫୁଟି ଆସେ
ଗୋଟି ଗୋଟି
ପାର୍ଦ୍ଦ ଅମ୍ଲାନ
ବଜାଏ ବଂଶୀ ରନ୍ଧ୍ରେ
ମଧୁ-କଣ୍ଠ ଗୀତ
ହେ ଜୀବନ
ଆଜ ପୁଣି ତବ ଜନ୍ମ ତିଥି !
ହ୍ରୁତ ତଳେ ମନ ଖୋଜେ

# ନାଦଶ୍ରୀ

କହୁଥିବା ପାଇଁ କେତେ ଅପାର କାହାଣୀ
ନଫୁଟଇ ଭାଷା ଜହ୍ୱାତଟଃ ଜଡମା ଭରେ
କଣ୍ଠ ନାଳ ମରି ମରି ଯାଏ
ମଉନେ ମଉନେ ହଜିଯାଏ କେତେ ଗୋପନତା
ହାୟ ! ଜୀବନ ଏକ କଷ୍ଟ ସତେ
ତୁମର ଏ ମଧ୍ୟା ମାରବତା !
ହେ ଜୀବନ
ଅକାଳବୃଷ୍ଟି ଆଜ କରଇ ତୁମରେ ଦର୍ପ ସେମନ୍ଥନ
କେଉଁ ଆଶା କେଉଁ ସେ ନିରାଶାକୁ ପାଥେୟ କରି
କର ପ୍ରଦକ୍ଷିଣ ଏଇ ବସୁଧା ବଳୟେ
କିବା ତୁମ କାମନା
ସୁଖ ଅବା ବେଦନା—ଅବା ସୁଖ-ବେଦନା—
ଦେବ—
କର ସୃଷ୍ଟି
ଦଣ୍ଡ ତୁମ ଅଛି ଆଗ୍ରହର ଦାନ ।
ଯା' ଦେବତେହେ କର ଅନୁଗ୍ରହ
ତା'ରେ ମୂର୍ତ୍ତି ମଣ୍ଡିତ ସମ୍ମାନ
ନକଷ୍ଟତ ଆତ୍ମ ପ୍ରବଞ୍ଚନ
ଅପଣାକୁ କରି ଆଜ ସାଥୀ
ଭୁଲିଛି ମୁଁ ଅନ୍ତ ଦୂର ପଥ
ହେ ଜୀବନ

## ଜୀବନ

ଆଜର ଏ ଛବ ଜନ୍ ବାସେ
ଘେନ ମୋର ହାର୍ଦ୍ଦିକ ବନ୍ଦନ ।



# ତରୁଣ କବିର ଖେଦ

ନିଖିଳ ମୋ ଜୀବନ ଜଳାଇ ଲେଖିଲି ମୁଁ ଏଇଯେ କବିତା
ସଖି ମୋର ଦଳ ନାହିଁ ପାଦେ ଏତ ମୋ'ର କରୁଣର ଗୀତା,
ସଜାଅନା ତାରେ ପଛେ ତୁମେ ତୁମର ସେ କର-ଶତଦଳେ
ଇଚ୍ଛା ଯଦ ଭିଜାଅ ଗୋ! ଆଜି ନୟନର ସ୍ନିଗ୍ଧ ଅଶ୍ରୁଜଳେ ।
ତାରେ ମନ୍ଦ ଲେଖିଛି ବସି ଜୀବନର ଲକ୍ଷ ଲୁହ ଦେଇ
ଅନ୍ତରର ସକଳ ବେଦନା-ସ୍ନେହ ଭରେ ଗୋଟିଗୋଟି ଫେଇ ।-
ଗୋଟି ଗୋଟି ସଜାଡିଛି ତାରେ ସ୍ମରଣର ପୁଣ୍ୟ ରେଣୁ ଢାଳି
ଜୀବନର ସର୍ବସ୍ୱ ନିଗାଡ଼ି , ଦେହ-ଧୂପେ ସଳିତାକୁ ଜାଳି ।

ତୁମେ ଯଦି ନ ଦେଲ ସାଦରେ—

ପଡିରହୁ କ୍ଷୁବ୍ଧ ଅନାଦରେ କେଉଁ ସେଯେ ବନପଥ ଧାରେ ।

# ତରୁଣ କବିର ଖେଦ

ସେଇ ପଥେ ନଉଠ୍ ଗୋ ଦୂବା ସମୀରଣେ ମଥା ଡୋଳାଇ
ତାର ଚୂଳେ ନଥରୁ ତୁଷାର ଉଷସୀର ମୟୂଖ ଖେଳାଇ ।
ନଝୁରୁଗୋ ଗ୍ରୀଷ୍ମ ତାରପରେ ଦୂରେ ରହୁ ସ୍ନିଗ୍ଧ ବନଛତ୍ର
ଡାକପାଉ ଦୂରେ ପରଭୃତ ନଶୁଣି ତା' ସରସ ଧ୍ୱନିତ ।
ନଝୁନ୍ତୁ ତା' ପରେ ମୁଗ୍ଧ ତନ୍ଦ୍ରା ଦ୍ୱରେ ସ୍ୱାଦ୍ଧ ନେଉ ପବମାନ
ତା'ର ପାଇଁ ନରହୁ ରେ: ପଛେ ଏକଗତି ଚଳେ ସନମାନ ।
ଗୋଲାପର ନଶୀଥ ପାଖୁଡ଼ା ତାର ବକ୍ଷେ ନଝୁଉଗୋ ପିନା
ତାର କାନେ କହୁ ସେ ଯେ ନିଜେ ଆପଣାର ଅପୂର୍ଣ୍ଣ ବେଦନା ।
ଛନ୍ଦ ତା'ର ଯାଉଚର ଧ୍ୱନି
ଶତସ୍ମୃତି ସମାଧି ଅନ୍ତରେ ପଡ଼ିରହୁ ସୁପ୍ତ ବୀଣା ବାଜ ।

ଯେ କବିତା ବସି ସେ ଆଙ୍କିଛି ପତ୍ରର ଶେଷବିନ୍ଦୁ ଦେଇ
କେ ଦେଖିବ ତାର ଚିତ୍ରପଟ ଗୋଟି ଗୋଟି ପୃଷ୍ଠା ଲେଉଟାଇ
ତାର ତଳେ ରଖିଛି ଗୋପନେ ଅଶ୍ରୁଭିଜା ଦୁଇଟି ନୟନ
ଆକୁଳ ବ୍ୟଥିତ ହୃଦୟର ବିଦଳିତ ଅକୁହା କଥନ ।
ଧରାପରେ ଯା ଦେଇଛି ଛନ୍ଦ ନମାଇ ସ୍ତବ୍ଧେ ଆଖିପତା
ତାରେ ସେସେ ଲେଖିଛି ଯତନେ ନକହିବ ଗୋ ପଦେହେଲେ କଥା!
ସେଇ ବୃତ୍ତ ଅକ୍ଷର ଶବ୍ଦରେ ମାରେ ଯେଉଁ ହୃଦୟ ସ୍ପନ୍ଦନ
ଜାଣ ସଖି ତା'ର ତଳେ ଝୁରେ ଛିନ୍ନ ଏକ କ୍ଷୁଦ୍ରିତ ଜୀବନ ?
ବୁଝିନାହିଁ ଯେବେ ତାର ମୂଲ
ଛୁଅଁ ନାହିଁ ଚ୍ୟୁତ ଯେ କବିତା କର ନାହିଁ ତାରେ କଳବଳ ।

## ନାଦଶ୍ରୀ

ଏ କବିତା ଦେହେ ପୁଣି ଅଛି ଜୀବନର ସହସ୍ର ଶୋଚନା
ଶତଫୁଲର କୋମଳ ସୁରଭି ପୁଣି ଶତ ସ୍ନେହର ବନ୍ଦନା ।
ତାର ଅଙ୍ଗେ ଅଛି ପ୍ରିୟତମେ ଜୀବନର କୁଙ୍କୁମିତ ଶ୍ୱାସ
ତାର ପାଇଁ ପରଶେ ଉଦ୍ଦେଶ ଅମରଣ ଅନନ୍ୟ ବିଶ୍ୱାସ,—
(ତଣୁ) ତାର ବକ୍ଷେ ନଫୁଟି ପଛକେ ଅନାଦୃତ ଦୁର୍ବାଦଳପୁଷ୍ପ
ଶେଫାଳିକେ ମିଶି ଯାଉ ସିନା ଧରି ନବ ମରକତ ବାସ୍ପ
ଛପିଯାଉ ସୁଦୂର ସୀମାନ୍ତେ ତାରେ କେହି ନଦେଖି ଲୋଚନେ
ଆରପାରେ ହେଉଗୋ ମିଳନ ପ୍ରଭାତର ସେ କେଉଁ ଲଗନେ
ତାରେ ତୁମେ ଦିଅ ଟିକି ଥାର
ପଥ ପ୍ରାନ୍ତେ ଫେରିରହୁ ସେ ସେ ଜୀବନର ଶେଷ କାବ୍ୟ-ଗୀର ।

